# ହାଲ ବନ୍ଦୋବସ୍ତ କଥା



ସମ୍ପାଦକ

ରାୟସାହେବ ଶ୍ରୀ ଫଣୀନ୍ଦ୍ରନାଥ ଗୁପ୍ତ,

ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର, ଇନ୍‌ଚାର୍ଜ,

ଓଡ଼ିଶା-ସେଟଲମେଣ୍ଟ



ପ୍ରଣେତା ଓ ପ୍ରକାଶକ

ଶ୍ରୀ ସତୀଶଚନ୍ଦ୍ର ବେନାର୍ଜୀ,

ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର,

ଓଡ଼ିଶା-ସେଟଲମେଣ୍ଟ



ପ୍ରଥମସଂସ୍କରଣ ୧୯୨୫

— 0 —

ମୂଲ୍ୟ ଟ ୦ ।୵ ସାଢ଼ଅଣା ମାତ୍ର

Dedicated

TO

P. T. Mansfield, Esquire, I. C. S.,

SETTLEMENT OFFICER,

Orissa Settlement.

——o——

# ହାଲ ବନ୍ଦୋବସ୍ତ କଥା



ସମ୍ପାଦକ

ରାୟସାହେବ ଶ୍ରୀ ଫଣୀନ୍ଦ୍ରନାଥ ଗୁପ୍ତ,

ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର, ଇନ୍‌ଚାର୍ଜ,

ଓଡ଼ିଶା-ସେଟଲମେଣ୍ଟ



ପ୍ରଣେତା ଓ ପ୍ରକାଶକ

ଶ୍ରୀ ସତୀଶଚନ୍ଦ୍ର ବେନାର୍ଜୀ,

ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସର,

ଓଡ଼ିଶା-ସେଟଲମେଣ୍ଟ



ପ୍ରଥମସଂସ୍କରଣ ୧୯୨୪

— 0 —

ମୂଲ୍ୟ ଟ ୦ ।୵/ ସାତଅଣା ମାତ୍ର

# ସୂଚୀପତ୍ର

## ୧ ମ ଭାଗ

### ଆଇନ

ପ୍ରଜା କେତେ ପ୍ରକାର; ରୟତ କେତେ ପ୍ରକାର; କଚ୍ଚିମାହାଲରେ ଚିରସ୍ଥାୟୀ ଜମା ରୟତି ସ୍ୱତ୍ୱ; ସ୍ଥିତିବାନ ରୟତ; ଦଖଲସ୍ୱତ୍ୱ ବିଶିଷ୍ଟ ଓ ଦଖଲସ୍ୱତ୍ୱ ଶୂନ୍ୟ ରୟତ; ସିକ୍କିମୀ ରୟତ; ମଧ୍ୟସ୍ୱତ୍ୱାଧିକାରୀ; ବାଜ୍ୟାପ୍ତି ମଧ୍ୟସ୍ୱତ୍ୱାଧିକାରୀ ଓ ବାଜ୍ୟାପ୍ତି ରୟତ; ଗତ ବନ୍ଦୋବସ୍ତରେ କେତେପ୍ରକାର ମଧ୍ୟସ୍ୱତ୍ୱାଧିକାରୀ ଥିଲେ ଓ ହାଲ ବନ୍ଦୋବସ୍ତରେ ସେମାନଙ୍କୁ କିରୂପେ ରେକର୍ଡ କରାହୋଇଅଛି; ଗତ ବନ୍ଦୋବସ୍ତରେ କେତେ ପ୍ରକାର ରୟତୀ ସ୍ୱତ୍ୱ ଥିଲା ଓ ହାଲ ବନ୍ଦୋବସ୍ତରେ ସେମାନଙ୍କୁ କିରୂପେ ରେକର୍ଡ କରାହୋଇଅଛି । ଶିକମୀଦାର; ଘରବାଡ଼ୀ ସ୍ୱତ୍ୱ; ହସ୍ତାନ୍ତର; କେଉଁ ମଧ୍ୟସ୍ୱତ୍ୱାଧିକାରୀମାନେ ଜମିଦାରର ବିନାନୁମତିରେ ହସ୍ତାନ୍ତର କରି ପାରନ୍ତି; ଯୋତ [illegible] (ପ୍ରଜାସ୍ୱତ୍ୱ ଆଇନର ୧୧ ଧାରା;) ଯେଉଁ ଯୋତ ଜମିଦାରର ବିନାନୁମତିରେ ହସ୍ତାନ୍ତର ହୋଇ ପାରେ ତାହାର ପୂର୍ଣ୍ଣ ଓ ଖଣ୍ଡ ହସ୍ତାନ୍ତର ହେଲେ କିରୂପେ ରେକର୍ଡ ହେବ ତାହାର ଦୃଷ୍ଟାନ୍ତ; ହସ୍ତାନ୍ତର ବିଷୟରେ ବାଜ୍ୟାପ୍ତି ମଧ୍ୟସ୍ୱତ୍ୱାଧିକାରୀଙ୍କ ସମ୍ବନ୍ଧେ ଯେଉଁ ଆଇନ ବାଜ୍ୟାପ୍ତି ରୟତଙ୍କର ମଧ୍ୟ ସେହି ଆଇନ; ଯେଉଁ ଯୋତମାନଙ୍କର ହସ୍ତାନ୍ତରରେ ଜମିଦାରର ବା ମାଲିକର ମଞ୍ଜୁର ଆବଶ୍ୟକ; ପଟ୍ଟମାହାଲମାନଙ୍କରେ ହସ୍ତାନ୍ତରର ନିୟମ; ୧୨ ବର୍ଷର ଉର୍ଦ୍ଧ୍ୱ କାଳର ହସ୍ତାନ୍ତର; ଭୋଗ ବନ୍ଧକ; ଉଇଲରେ ନାମଜାରୀ ଆବଶ୍ୟକ କି ନା; ହେବାନାମା କଣ; ଶିକିମୀ ସ୍ୱତ୍ୱ ହସ୍ତାନ୍ତର; ରୟତୀ ଯୋତର ଜମା ମାଲିକ ଦ୍ୱାରା ପ୍ରଜାର ସମ୍ମତ କ୍ରମେ କିରୂପେ ବୃଦ୍ଧି ହୋଇପାରେ; ପାଉଟ; ଭଗ ବା ସଞ୍ଜା ସ୍ଥଳେ ନଗଦ ଜମା ଧାର୍ଯ୍ୟ କରାଇବାର ନିୟମ; ନିଜଚାଷ ଜମି ଓ ତହିଁରେ ରୟତି ସ୍ୱତ୍ୱ, ନିଜଚାଷ ଜମି ଚାଷ କରୁଥିବା ରୟତଙ୍କଠାରୁ ନିର୍ଦ୍ଧିଷ୍ଟ କବୁଲିୟତ ଲେଖାଇ ନେବାର ଫଳ; ନିଜ ଯୋତ; ପଟ୍ଟମାହାଲର ନିଜ ଯୋତ, କଚ୍ଚିମାହାଲର ନିଜଯୋତ; ନିଜ ଚାଷ ଓ ନିଜ ଯୋତ ଜମିର ପ୍ରଭେଦ; 'ଦଖଲସ୍ୱତ୍ୱ ଶୂନ୍ୟ ବାବଦ ନିଜ ଯୋତ' ରୟତ; 'ସ୍ଥିତିବାନ ବାବତ ନିଜ ଯୋତ' ରୟତ; କେଉଁମାନଙ୍କର ନିଜ ଯୋତ ଜମି ରହିପାରେ, ଷୋଳପଣ ମାଲିକ ଆପଣା ଅଧୀନସ୍ଥ ରୟତ ଯୋତ ହସ୍ତଗତ କରିଥିଲେ ତାହା କିରୂପେ ରେକର୍ଡ ହେବ; ଅଂଶିକ ମାଲିକ ଆପଣା ଅଧୀନସ୍ଥ ରୟତ ଯୋତ ହସ୍ତଗତ କଲେ ତାହା କିରୂପେ ରେକର୍ଡ ହେବ । ଜମିଦାରମାନଙ୍କର କେଉଁ ସ୍ଥଳରେ ରୟତିସ୍ୱତ୍ୱ ରହିପାରେ; ମାଲିକ କର୍ତ୍ତୃକ ବାଜ୍ୟାପ୍ତି ସ୍ୱତ୍ୱ ପ୍ରାପ୍ତିର ଫଳ; ମାଲିକର ଅନାବାଦୀ; ସର୍ବସାଧାରଣ

ଓ ରହିଡ ଜମି ଓ ଘର ସମ୍ବନ୍ଧେ ମାଲିକ ଓ ସେମାନଙ୍କ ଏଜେଣ୍ଟମାନଙ୍କ ଭୁଲ ଧାରଣା; ଅନାବାଦୀ ଜମି ଆବାଦ କରିବା ରଯ୍ୟତଙ୍କ ସତ୍ତ୍ୱ; ବେବନ୍ଦୋବସ୍ତି ଜମିବାଦୀ ଯୋତ; ଜମିଦାର ତଥା ଜମିଗିର; ଦେଶ ହେତା ଜାଗିରି; କେଉଁ ସ୍ଥଳେ ଦେଶ ହେତା ଜାଗିରି ଉପରେ ଜମା ଧାର୍ଯ୍ୟ କରାଯିବ; ସାବକ ରେକର୍ଡରେ ଦରଜ ହୋଇଥିବା ସ୍ଥିତବାନ ବାବତ ଜାଗିରର ସତ୍ତ୍ୱର ଅର୍ଥ; ସରକାରୀ ଜମି ଓ ଘରରେ ଦଖଲଦାରମାନଙ୍କର ସତ୍ତ୍ୱ ।

—ପୃ ୧ ରୁ ୨୭ ପୃଷ୍ଠା

## ୨ ୟ ଭାଗ

### ଖାନାପୁରୀ

ପଞ୍ଚମାହାଲର ଟ୍ରାଭର୍ସ ସର୍ଭେ; କାଡେଷ୍ଟ୍ରାଲ ସର୍ଭେ ଓ ବାଉଣ୍ଡରୀ ଡିସ୍ପ୍ୟୁଟ ଓ ତହିଁର ଅପିଲ; ବାଉଣ୍ଡରୀ ପିଲର; ସର୍ଭେ ବା ନକ୍ସା ପ୍ରସ୍ତୁତ; ନୂତନ ରେକର୍ଡ ଓ ମାଲିକ ଓ ପ୍ରଜାଙ୍କ ହାଜର ହେବା ସମ୍ବନ୍ଧେ ନିୟମ; ଖେଓ୍ୱାଟ; ଖାନାପୁରୀ; ଖାନାପୁରୀ ପରେ ଖାନାପୁରୀ କାଗଜପତ୍ରର ନକଲ ପାଇବାର ନିୟମ ।

—ପୃ ୨୮ ରୁ ୩୨ ପୃଷ୍ଠା

## ୩ ୟ ଭାଗ

### ଅଟେଷ୍ଟେସନ, ଡ୍ରାଫ୍ଟ ପବ୍ଲିକେଶନ ଓ ୧୧୭ ଧାରା ଆପତ୍ତି

ଏରୀଆ ସ୍ଲିପ; ଜମିଦାରମାନଙ୍କର ଏରିଆ ସ୍ଲିପ; ବୁଝାରତ; ମିସ୍ତେକ; ଖାନାପୁରୀ ରେକର୍ଡରେ ସାଧାରଣତଃ କି ପ୍ରକାର ମିସ୍ତେକ ପାଯାଏ; ଦଖଲଓ୍ୱାରି ଖାତା; ଯେ ସମସ୍ତ ହସ୍ତାନ୍ତରରେ ମାଲିକର ମଞ୍ଜୁର ଆବଶ୍ୟକ ମଞ୍ଜୁର ନ ଥିଲେ ତାହା କି ରୂପେ ରେକର୍ଡ ହେବ; ଡିସ୍ପ୍ୟୁଟ ଅର୍ଥାତ ବିବାଦ; ଅଟେଷ୍ଟେସନ ସମୟେ ଜମା ସମ୍ବନ୍ଧେ ବିଚାର; ତସଦିକ; ଅଟେଷ୍ଟେସନ କାର୍ଯ୍ୟ ସମ୍ବନ୍ଧେ ସାଧାରଣ କଥା; ଡ୍ରାଫ୍ଟ ପବ୍ଲିକେସନ (ଅର୍ଥାତ କାନଗୋଇ ଶୁଣାଣି) ଓ ୧୧୭ ଧାରା ଅପତ୍ତି; ୧୧୭ ଧାରା ଆପତ୍ତିରେ ନୋଟିସ ଦେବାର ନିୟମ; ୧୧୭ ଧାରା ଆପତ୍ତି ଫଏସଲା ।

— ପୃ ୩୩ ରୁ ୪୦ ପୃଷ୍ଠା

## ୪ ର୍ଥ ଭାଗ

### କଟି ମାହାଲମାନଙ୍କର ନ୍ୟାଯ୍ୟ ଜମା ଧାର୍ଯ୍ୟ ଓ ୧୨୩ ଧାରା ଆପତ୍ତି

ନ୍ୟାଯ୍ୟ ଜମା ଧାର୍ଯ୍ୟ; ରେଣ୍ଟରୋଲ ଡ୍ରାଫ୍ଟ ପବ୍ଲିକେସନ ଓ ୧୨୨ ଧାରା ଆପତ୍ତି; ଜମା ଧାର୍ଯ୍ୟ ସମ୍ବନ୍ଧେ ସାଧାରଣ କଥା ଓ ଜମା ବୃଦ୍ଧିର ହାର; ଜମା ଧାର୍ଯ୍ୟର ସାଧାରଣ ରେଟ କେଉଁ ସ୍ଥଳେ ବ୍ୟତିକ୍ରମ ହେବ; ବାଯାପ୍ତିଦାର ରଯତମାନଙ୍କର ଜମା ଧାର୍ଯ୍ୟ ଓ ତାହା କମ

ହେବାର କାରଣ; ବାଯ୍ୟାପ୍ତି ମଧ୍ୟସ୍ୱତ୍ୱାଧିକାରୀ ଓ ଚରିତା ଜମାବନ୍ଦ ମଧ୍ୟସ୍ୱତ୍ୱାଧିକାରୀଙ୍କର ଜମା ଧାର୍ଯ୍ୟର ନିୟମ; ଅନ୍ୟାନ୍ୟ ମଧ୍ୟସ୍ୱତ୍ୱାଧିକାରୀମାନଙ୍କର ଜମା ଧାର୍ଯ୍ୟ ସମ୍ବନ୍ଧେ ସାଧାରଣ ନିୟମର ବ୍ୟତିକ୍ରମ; ମୌଜାର ଭିଲେଜ ରେଟ ଓ ନୂଆ ଭିଲେଜ ରେଟ କଷୋଟର ପ୍ରଣାଳୀ ।

— ପୃ ୪୬ ରୁ ୪୭ ପୃ ।

## ୫ ମ ଭାଗ

### ୧୨୮ ଧାରା ଦରଖାସ୍ତ ଓ ୧୩୦ ଧାରା ମୋକଦ୍ଦମା

ପଞ୍ଚ୍‌ମାହାଲରେ ଓ ବାହେଲଦାରଙ୍କ ଏବଂ ଠିକା ବାହେଲଦାରଙ୍କ ଅଧୀନସ୍ଥ ପ୍ରଜା-ମାନଙ୍କର ଜମା ବୃଦ୍ଧି ସକାଶେ ୧୨୮ ଧାରା ମୁତାବକ ଦରଖାସ୍ତ; ୧୨୮ ଧାରା ଦରଖାସ୍ତ ଦାଏର କରିବାର ମିଆଦ ଓ ନିୟମ; କୋର୍ଟଫିସ; ନୋଟିସଖର୍ଚ୍ଚା; ଦଖଲର ପିରସ୍ତ; ଧା, ୧୨୮ରା ଦରଖାସ୍ତ ଉପରେ 'ଇସୁ'; ଧା ୧୩୦ ରା ମକଦ୍ଦମା ଦାଏର ନିୟମ; ନକଲ ପାଇବାର ନିୟମ ।

— ପୃ ୪୮ ରୁ ୫୩ ପୃ ।

## ୬ଷ୍ଠ ଭାଗ

### ଧା ୪୭ ରା ଅନୁସାରେ ଦରଖାସ୍ତ ଓ ତାହାର ବିଚାର

ମିଆଦ, କୋର୍ଟଫିସ; ଚେତ୍ରଯୋଗ ସକାଶେ ପ୍ରାର୍ଥନା ନାମଞ୍ଜୁର; ନୋଟିସ ଓ ନୋଟିସ ଖର୍ଚ୍ଚା; ଫଇସଲ; ଅପିଲ; କଚିମାହାଲ ମୌଜା ସମ୍ବନ୍ଧେ ନିୟମ ।

— ପୃ ୫୩ ରୁ ୫୬ ପୃ ।

## ୭ମ ଭାଗ

### ବନ୍ଦୋବସ୍ତର ଖର୍ଚ୍ଚା ଆଦାୟ

କେଉଁମାନଙ୍କ ଠାରୁ ବନ୍ଦୋବସ୍ତ ଖର୍ଚ୍ଚା ଆଦାୟ ହେବ; ଖର୍ଚ୍ଚା କଷୋଟର ସାଧାରଣ ନିୟମ; ଜମିଦାର ମାନଙ୍କ ନିଜଯୋତ ପ୍ରଭୃତି ଜମିର ଖର୍ଚ୍ଚା; ଜମିଦାର ଅଧୀନେ ମଧ୍ୟସ୍ୱତ୍ୱାଧିକାରୀ ଥିଲେ ତାଙ୍କ ଖର୍ଚ୍ଚାରୁ କାହାକୁ କେତେ ଦେବାକୁ ହେବ; ଆଦାୟ ସମ୍ବନ୍ଧେ ବିଶେଷ କଥା; ଯାହାଠାରୁ ଖର୍ଚ୍ଚା ପ୍ରାପ୍ୟ ସେହି ବ୍ୟକ୍ତି ମରିଯାଇଥିଲେ କିମ୍ବା ତାହାର ସ୍ୱତ୍ୱ ହସ୍ତାନ୍ତରିତ ହୋଇଥିଲେ ସେ ସ୍ଥଳେ କିରୂପେ ଖର୍ଚ୍ଚା ଆଦାୟ ହେବ; ଛୋଟ ବାହେଲଦାର ଓ ଠିକା ବାହେଲଦାରଙ୍କ ନିମିତ୍ତ ଖର୍ଚ୍ଚା କଷୋଟର ସୁବିଧାଜନକ ନିୟମ କରିବା ସେଟଲ୍‌ମେଣ୍ଟ ବିଭାଗର ଇଚ୍ଛାଧୀନ, ସମୟରେ ଖର୍ଚ୍ଚା ଆଦାୟ କରିବାର ଫଳ ।

— ପୃ ୫୭ ରୁ ୬୦ ପୃ ।

## ୮ମ ଭାଗ

### ଅପିଲ

ପ୍ରଜାସ୍ୱତ୍ୱ ଆଇନର ୪୭, ୧୨୭, ୧୨୮, ୧୨୯, ୧୩୦, ୧୩୨, ୧୩୩, ଓ ୧୩୭ ଧାରା ଅନୁସାରେ ପ୍ରଥମ କୋର୍ଟର ହାକିମ ଅଧିସରମାନଙ୍କ ସମ୍ମୁଖରେ କଲେକ୍ଟର ଓ ତାହାଠାରୁ ଓ ଲ ମିଆଦରେ ଅପିଲ କରିବାକୁ ହେବ ତାହାର ନିୟମ । —ପୃ ୬୧ ଷ୍ଠା

## ୯ମ ଭାଗ

### ଶେଷ

ବନ୍ଦୋବସ୍ତ ରେକର୍ଡମାନ କେତେବେଳେ ପ୍ରମାଣ ସ୍ୱରୂପ ଅଦାଲତରେ ଦାଖଲହୋଇ ପାରିବ; ଧା ୧୩୩ ର ଅନୁସାରେ ପ୍ରକୃତ ( Bonafide ) ଭୁଲ ସଂଶୋଧନ; ୧୨୮ ଓ ୧୩୦ ଦଫା ଅନୁସାରେ ପ୍ରକାଶିତ ସବର ରିଭିଜନ ସେଟଲ୍‌ମେଣ୍ଟ ବିଭାଗ କର୍ତ୍ତୃକ ନିର୍ଦ୍ଧାରିତ ଜମା କେଉଁ ସମୟଠାରୁ ଆଦାୟ ହେବ । —ପୃ ୬୨ ରୁ ୬୩ ଷ୍ଠା





# ହାଲ ବନ୍ଦୋବସ୍ତ କଥା

## ପ୍ରଥମ ଭାଗ

---

## ଆରମ୍ଭ

୧—ବର୍ତ୍ତମାନ ଓଡ଼ିଶା ସେଟଲମେଣ୍ଟ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନ ମୁତାବକ ପରିଚାଳିତ ହେଉଥିବାରୁ ଉକ୍ତ ଆଇନର ସେଟଲମେଣ୍ଟ କାର୍ଯ୍ୟ ସମ୍ପର୍କୀୟ ଅବଶ୍ୟଜ୍ଞାତବ୍ୟ ବିଷୟମାନ ନିମ୍ନରେ ଲେଖାଗଲା—

୨—ପ୍ରଜାସତ୍ତ୍ୱ ଆଇନର ୪ ଧାରା ଅନୁସାରେ ପ୍ରଜାମାନଙ୍କୁ ନିମ୍ନଲିଖିତ ଚାରି ଶ୍ରେଣୀରେ ବିଭାଗ କରି ଯାଇଅଛି । ଯଥା—

୧ । ମଧ୍ୟସତ୍ତ୍ୱାଧିକାରୀ ମଧ୍ୟେ ନିମ୍ନମଧ୍ୟସତ୍ତ୍ୱାଧିକାରୀ

୨ । ରୟତ

୩ । ଶିକମି ରୟତ

୪ । ଚାନ୍ଦିନାଦାର

ରୟତମାନଙ୍କ ମଧ୍ୟ ନିମ୍ନଲିଖିତ ତିନି ଶ୍ରେଣୀରେ ବିଭାଗ କରି ଯାଇଅଛି । ଯଥା —

କ । ଚିରସ୍ଥାୟୀଜମା ରଯୃତ

ଖ । ଦଖଲସତ୍ତ୍ୱବିଶିଷ୍ଟ ରଯୃତ

ଗ । ଦଖଲସତ୍ତ୍ୱଶୂନ୍ୟ ରଯୃତ

୩ । (କ) କେତେକ ମାହାଲମାନଙ୍କରେ ଅର୍ଥାତ୍ ଏହି ବନ୍ଦୋବସ୍ତରେ ଯେଉଁ ମାହାଲମାନଙ୍କର ରାଜସ୍ୱ ପରିବର୍ତ୍ତନ ଓ ବୃଦ୍ଧି ହେବ ତହିଁରେ ଚିରସ୍ଥାୟୀ ଜମା ରଯୃତ ନାହାନ୍ତି କିମ୍ବା ଏପରି ସତ୍ତ୍ୱ ଏ ବନ୍ଦୋବସ୍ତରେ ଦରଜ ହୋଇ ପାରିବ ନାହିଁ । କେବଳ ଲାଖରାଜଦାରମାନଙ୍କ ଅଧୀନରେ କିମ୍ବା ପକ୍କା ମାହାଲରେ ଅର୍ଥାତ୍ ଯେଉଁ ମାହାଲର ରାଜସ୍ୱ ଚିରକାଳ ନିମନ୍ତେ ଧାର୍ଯ୍ୟ ହୋଇଅଛି ତହିଁରେ ଓ ଟେଙ୍କୀବାହେଲ ମଧ୍ୟସ୍ୱତ୍ୱାଧିକାରୀମାନଙ୍କର (ଯାହାଙ୍କର ଖଜଣା କମ୍ ବେଶି ହୋଇ ନ ପାରେ) ଅଧୀନେ ଏହି ଚିରସ୍ଥାୟୀ ଜମା ସତ୍ତ୍ୱର ରଯୃତ ରହି ପାରନ୍ତି ।

(ଖ) କୌଣସି ମୌଜାରେ ଯଦି ବାରବର୍ଷ ଯାବତ୍ କୌଣସି ରଯୃତର ରଯୃତି ଯୋତ ଥାଏ, ତାହାହେଲେ ସେହି ରଯୃତ ସେହି ମୌଜାରେ ସ୍ଥିତିବାନ ରଯୃତ ବୋଲି ପରିଗଣିତ ହେବ । ସ୍ଥିତିବାନ୍ ରଯୃତ ଦଖଲରେ ଯେଉଁ ଜମି ଯେତେବେଳେ ରହିବ ତହିଁରେ ତାହାର ଦଖଲସତ୍ତ୍ୱ ଜାତ ହେବ । ଏହି ସ୍ଥିତିବାନ୍ ସତ୍ତ୍ୱ ଉପରଲିଖିତ ବାରବର୍ଷ ନିୟମ ଛଡ଼ା ଅନ୍ୟ କୌଣସି ନିୟମରେ ଲାଭ କରାଯାଇ ନ ପାରେ ; ଅର୍ଥାତ୍ ଯଦି କୌଣସି ଲୋକ ଯେଉଁ ମୌଜାରେ ତାହାର ପୂର୍ବରୁ କୌଣସି ଯୋତ ନାହିଁ ତହିଁରେ ସ୍ଥିତିବାନ୍ ବା ଦଖଲ ସତ୍ତ୍ୱ ବିଶିଷ୍ଟ ଯୋତ ଖରିଦ କରେ, ତାହାହେଲେ ସେହି ଯୋତ ପକ୍ଷେ ସେ କେବଳ ଦଖଲସତ୍ତ୍ୱ-ବିଶିଷ୍ଟ ରଯୃତ ବୋଲି ପରିଗଣିତ ହେବ । ବାରବର୍ଷ ସେହି ଯୋତ ଦଖଲ କଲା ଉତ୍ତାରୁ ସେହି ମୌଜାରେ ସ୍ଥିତିବାନ୍ ରଯୃତ ବୋଲି ପରିଗଣିତ ହୋଇ ପାରିବ । ମୌଜାରେ ସ୍ଥିତିବାନ ରଯୃତର ଯେତେଗୋଟି ସାଧାରଣ ରଯୃତି ଯୋତ ଥିବ ଭିନ୍ନ ଭିନ୍ନ ତଉଜି ଅଧୀନରେ କିମ୍ବା ଲାଖରାଜ ଅଧୀନରେ

ହେଲେହେଁ କିମ୍ବା ସେମାନଙ୍କ ମଧ୍ୟରୁ କୌଣସି ଯୋତ ବାରବର୍ଷରୁ କମ୍ କାଳରୁ ତାହା ଦଖଲରେ ଆସିଥିଲେହେଁ ସେ ସମସ୍ତ ଯୋତର ସତ୍ୱ ସ୍ଥିତିବାନ ବୋଲି ଲେଖାଯିବ । ଏଣୁକରି ଦେଖାଯାଉ ଅଛି ଯେ, କୌଣସି ରଯ୍ୟତର ସ୍ଥିତିବାନ ସତ୍ୱରେ ଖାତା ଥିଲେ ତାହା ନାମରେ ଦଖଲସତ୍ୱବିଶିଷ୍ଟ କିମ୍ବା ଦଖଲସତ୍ୱଶୂନ୍ୟ ଖାତା ହୋଇ ନ ପାରେ । କିନ୍ତୁ ଧଅଗ୍ର ବା ଉଚ୍ଚବନ୍ଧ ଏବଂ ନିଜ୍‌ଯୋତ ଜମି ହେଲେ ଏହି ନିୟମର ବ୍ୟତିକ୍ରମ ହୋଇପାରେ ।

(ଗ) ଯେଉଁ ରଯ୍ୟତ ମୌଜାରେ ସ୍ଥିତିବାନ୍ ରଯ୍ୟତ ନୁହେ, କିମ୍ବା କୌଣସି ସ୍ଥିତିବାନ୍ ରଯ୍ୟତର ବା ଦଖଲସତ୍ୱବିଶିଷ୍ଟ ଯୋତ ପାଇ ନାହିଁ କିନ୍ତୁ ବାରବର୍ଷ କମ୍ କାଳରୁ ଜମି ଦଖଲକାର ଅଛି, ସେ ସେହି ମୌଜାରେ ଦଖଲସତ୍ୱଶୂନ୍ୟ ରଯ୍ୟତ ବୋଲି ପରିଗଣିତ ହେବ । ଏକ ରଯ୍ୟତର ଏକ ମୌଜାରେ ଦଖଲସତ୍ୱବିଶିଷ୍ଟ ଓ ଦଖଲସତ୍ୱଶୂନ୍ୟ ସତ୍ୱରେ ଖାତା ହୋଇପାରେ । ସତ୍ୱ ପରେ ଦଖଲସତ୍ୱ ଶୂନ୍ୟ ଲେଖାଗଲେ କେଉଁ ସାଲଠାରୁ ଦଖଲକାର ଅଛି ତାହା ଲେଖାଯିବ । ଏହାଦ୍ୱାରା ସେହି ରଯ୍ୟତର ସ୍ଥିତିବାନସତ୍ୱ ଲାଭର ସମୟ ନିରୂପିତ ହୋଇ ପାରିବ ।

(ଘ) ଯେଉଁମାନେ ଜମିଦାରଙ୍କୁ କିମ୍ବା ମଧ୍ୟସତ୍ୱାଧିକାରୀମାନଙ୍କୁ ଜମା ଦିଅନ୍ତି ନାହିଁ ଓ ତାହାଙ୍କର ଯୋତର ଜମା କୌଣସି ଜମିଦାର ଅଧୀନସ୍ଥ ରଯ୍ୟତଙ୍କୁ କିମ୍ବା ମଧ୍ୟସତ୍ୱାଧିକାରୀ ଅଧୀନସ୍ଥ ରଯ୍ୟତଙ୍କୁ ଆଦାୟ ଦିଅନ୍ତି ସେମାନଙ୍କର ସତ୍ୱ " ଚିକିମ ରଯ୍ୟତ " ।

(ଙ) ଉପର ଲିଖିତ କୌଣସି ପ୍ରକାର ରଯ୍ୟତଙ୍କୁ ମାଲିକ ବିନା ଅଦାଲତର ସାହାଯ୍ୟରେ ଆଇନ ଅନୁସାରେ ଉଚ୍ଛେଦ କରି ପାରିବେ ନାହିଁ ।

୪-ମଧ୍ୟସତ୍ୱାଧିକାରୀ—ଯେଉଁମାନେ ନିଜେ କୃଷି ନକରି ରଯ୍ୟତ ବସାଇବା ଉଦ୍ଦେଶ୍ୟରେ ଜମିଦାରଙ୍କଠାରୁ ଜମି ବନ୍ଦୋବସ୍ତ ନିଅନ୍ତି, ସେମାନେ ମଧ୍ୟସତ୍ୱାଧିକାରୀ । ଏମାନଙ୍କ ଅଧୀନସ୍ଥ ରଯ୍ୟତ ଓ ଜମିଦାରଙ୍କ

ଅଧୀନସ୍ଥ ରୟତମାନଙ୍କ ସହ ପ୍ରକୃତରେ କୌଣସି ବିଷୟରେ କୌଣସି ପାର୍ଥକ୍ୟ ନାହିଁ । ଓଡ଼ିଶା ପ୍ରଜାସତ୍ୱ ଆଇନ ଅନୁସାରେ ସମସ୍ତ ସବ୍-ପ୍ରୋପ୍ରାଇଟରମାନେ ମଧ୍ୟସତ୍ୱାଧିକାରୀ ଅଟନ୍ତି । ସବ୍‌ପ୍ରୋପ୍ରାଇଟର ଓ ମଧ୍ୟ-ସତ୍ୱାଧିକାରୀ ମଧ୍ୟରେ ପାର୍ଥକ୍ୟ ଏହି ଯେ, ସବ୍‌ପ୍ରୋପ୍ରାଇଟରମାନେ ରାଜସ୍ୱ ସକାଶେ ଗଭର୍ଣ୍ଣମେଣ୍ଟଙ୍କୁ କବୁଲୟତ ଦେଇ ଅଛନ୍ତି ଓ ଆଇନ ଅନୁସାରେ ସେମାନଙ୍କର ନଗଦ ଯୋତ ସତ୍ୱ ହୋଇପାରେ ।

## ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ଓ ବାଜ୍ୟାପ୍ତି ରୟତ—

ଓଡ଼ିଶାରେ ପୂର୍ବେ ଲୋକେ ଜମି ନିଷ୍କର ଭୋଗ ଦଖଲ କରୁଥିଲେ । ତନ୍ମଧ୍ୟରୁ ଯେଉଁମାନଙ୍କର ନିଷ୍କର ସନନ୍ଦ ନ ଥିଲା ସେମାନଙ୍କର ଯୋତ ବାଜ୍ୟାପ୍ତି କରାଗଲା ଅର୍ଥାତ୍ ସେମାନଙ୍କର ଯୋତର ଜମା ଧାର୍ଯ୍ୟ କରାଗଲା ଓ ଯେଉଁମାନେ ସନନ୍ଦ ଦେଖାଇ ପାରିଲେ, ସେମାନଙ୍କର ନିଷ୍କର ଲଖରାଜ ସତ୍ୱ ବାହେଲ ରହିଲା । ଓଡ଼ିଶାର କଟି ପ୍ରଦେଶରେ ଏହିପରି ବାହେଲଦାରମାନଙ୍କୁ ଭୂମ୍ୟଧିକାରୀରୂପେ ପରିଗଣିତ କରାଯାଇ ତାଙ୍କ ନାମରେ ଗତ ବନ୍ଦୋବସ୍ତମାନଙ୍କରେ ଖେଓ୍ୱାଟ ପ୍ରସ୍ତୁତ କରାଯାଇଅଛି ଓ ଏହି ବାହେଲଦାରମାନେ ଜେନେରାଲ ନମ୍ବର ବା ଇଷ୍ଟିପେଲ ନମ୍ବର ଭୁକ୍ତ ହୋଇ କଲେକ୍‌ଟରୀ ଦ୍ୱିତୀୟଭାଗ 'ତ' ରେଜେଷ୍ଟରୀରେ ଦରଜ ଅଛନ୍ତି । ବର୍ତ୍ତମାନ ସେଟଲମେଣ୍ଟରେ ଏହି ବାହେଲଦାରମାନଙ୍କ ନାମରେ ଦ୍ୱିତୀୟଭାଗ ଖେଓ୍ୱାଟ କରାଯାଉଅଛି । ଯେଉଁମାନଙ୍କର ଲଖରାଜସତ୍ୱ ବାଜ୍ୟାପ୍ତି କରାଯାଇଅଛି, ସେମାନଙ୍କ ମଧ୍ୟରୁ କେହି କେହି ଗତ ବନ୍ଦୋବସ୍ତରେ ମଧ୍ୟସତ୍ୱାଧିକାରୀ ବୋଲି ଦରଜ ହୋଇଅଛନ୍ତି ଓ କେହି କେହି ରୟତରୂପେ ଦରଜ ହୋଇଅଛନ୍ତି । ପ୍ରଜାସତ୍ୱ ଆଇନର ୭ ଧାରା ଅନୁସାରେ ଜଣେ ବାଜ୍ୟାପ୍ତିଦାର ରୟତ କିମ୍ବା ମଧ୍ୟସତ୍ୱାଧିକାରୀ ଅଟେ, ତାହା କେବଳ ଗତ ବନ୍ଦୋବସ୍ତ ରେକର୍ଡ଼ ଅନୁସାରେ ସ୍ଥିର କରାଯିବ ।

୫-ମଧ୍ୟସତ୍ୱାଧିକାରୀ ସତ୍ୱ — ଗତ ବନ୍ଦୋବସ୍ତରେ ନିମ୍ନଲିଖିତ ମଧ୍ୟସତ୍ୱାଧିକାରୀ ସତ୍ୱମାନ ଦରଜ ହୋଇଥିବାର ଦେଖାଯାଏ ।

୧ । ଦେବୋତ୍ତର ବାହେଲ ଠେକୀ ମଧ୍ୟସତ୍ୱାଧିକାରୀ ।

୨ । ବ୍ରହ୍ମୋତ୍ତର ବାହେଲ ଠେକୀ ମଧ୍ୟସତ୍ୱାଧିକାରୀ ।

୩ । ବାହେଲ ଠେକୀ ମଧ୍ୟସତ୍ୱାଧିକାରୀ ।

( ଏହି ସମସ୍ତ ମଧ୍ୟସତ୍ୱାଧିକାରୀଙ୍କ ସତ୍ୱ ବର୍ତ୍ତମାନ ସେଟେଲମେଣ୍ଟରେ ଠେକି ବାହେଲ ସବ୍‌ ପ୍ରୋପ୍ରାଇଟର ବୋଲି ଦରଜ କରାଯାଉଅଛି )

୪ । ମକଦ୍ଦମ ।

୫ । ପଧାନ ।

୬ । ପିକମ୍ ଜମିଦାର ।

୭ । ପୁରୁସେଠି ।

୮ । ସରବରାକାର ।

୯ । ଖରିଦାଦାର ।

୧୦ । କୋଠ ଖରିଦାଦାର ।

( ଏହି ମଧ୍ୟସତ୍ୱାଧିକାରୀମାନେ ପ୍ରକୃତରେ ସବ୍‌ପ୍ରୋପ୍ରାଇଟର ଅଟନ୍ତି ଓ ଏହି ସମସ୍ତ ସତ୍ୱ ଗତ ବନ୍ଦୋବସ୍ତ ମୁତାବକ ଦରଜ କରାଯାଇ "ସବ୍‌ପ୍ରୋପ୍ରାଇଟର" ଶବ୍ଦ ଯୋଗ କରାଯିବ । )

୧୧ । ଦେବୋତ୍ତର ଲଖରାଜ ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ।

୧୨ । ବ୍ରହ୍ମୋତ୍ତର ଲଖରାଜ ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ।

୧୩ । କାମିଲ ଲଖରାଜ ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ।

୧୪ । ଅଧାକମା ଲଖରାଜ ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ।

୧୫ । ଠେକୀ ଅଧାକମା ଲଖରାଜ ବାଜ୍ୟାପ୍ତି ମଧ୍ୟସତ୍ୱାଧିକାରୀ ।

( ଏହି ପାଞ୍ଚ ପ୍ରକାର ମଧ୍ୟସତ୍ତ୍ୱାଧିକାରୀ ସତ୍ତ୍ୱ କେବଳ ବାଜ୍ୟାପ୍ତି ମଧ୍ୟ-ସତ୍ତ୍ୱାଧିକାରୀ ବୋଲି ବର୍ତ୍ତମାନ ସେଟଲମେଣ୍ଟରେ ଦରଜ ହେଉଅଛି ଦେବୋତ୍ତର ଲଖେରାଜ, ବାମିଲ ଲଖେରାଜ ପ୍ରଭୃତି ଶବ୍ଦ ଲେଖାଯିବାର ପ୍ରୟୋଜନ ନାହିଁ ।)

୧୬ । ଫୁଟକର ବାଜ୍ୟାପ୍ତି ଅଧୀନସ୍ଥ ମଧ୍ୟସତ୍ତ୍ୱାଧିକାରୀ ।

( ଏହି ସତ୍ତ୍ୱଟି କେବଳ ପୁରୀ ଜିଲ୍ଲାରେ ଦେଖାଯାଏ ଓ ଏହା ଉପରୋକ୍ତ ପ୍ରକାରର ବାଜ୍ୟାପ୍ତି ସତ୍ତ୍ୱ କି ନା, ତାହା ଏହି ବନ୍ଦୋବସ୍ତରେ ବିବେଚିତ ହେବ । )

୧୭ । ଖରିଦା ଜମାବନ୍ଦି ମଧ୍ୟସତ୍ତ୍ୱାଧିକାରୀ ।

୧୮ । ସିକମି ଖରିଦ ଦାର ମଧ୍ୟସତ୍ତ୍ୱାଧିକାରୀ ।

୧୯ । ପୁରୀସେଠୀ ଖରିଦାଦାର ମଧ୍ୟସତ୍ତ୍ୱାଧିକାରୀ ।

୨୦ । ନିଷ୍କର ଖରିଦାଦାର ମଧ୍ୟସତ୍ତ୍ୱାଧିକାରୀ ।

୨୧ । ଅପର ଖରିଦାଦାର ମଧ୍ୟସତ୍ତ୍ୱାଧିକାରୀ ।

୨୨ । ସାଧାରଣ ମଧ୍ୟସତ୍ତ୍ୱାଧିକାରୀ ।

୨୩ । ସରବରାହକାର ।

( ଗତ ବନ୍ଦୋବସ୍ତ ରେକର୍ଡ଼ ମୁତାବକ ଏହି ସମସ୍ତ ଭିନ୍ନ ଭିନ୍ନ ନାମ ବ୍ୟବହାର ହେବ ।)

୬-ରୟତି ସତ୍ତ୍ୱ— ଗତ ବନ୍ଦୋବସ୍ତ କାଗଜାତମାନଙ୍କରେ ନିମ୍ନ-ଲିଖିତ ସତ୍ତ୍ୱମାନ ଦେଖାଯାଏ ।

୧ । ଦେବୋତ୍ତର ବାହେଲ ଠିକା ସ୍ଥିତିବାନ ।

୨ । ବ୍ରହ୍ମୋତ୍ତର ବାହେଲ ଠିକା ସ୍ଥିତିବାନ ।

୩ । ବାହେଲ ଠିକା ସ୍ଥିତିବାନ ।

( ଗତ ବନ୍ଦୋବସ୍ତରେ ଦରଜ ହୋଇଥିବା ଉପରୋକ୍ତ ସତ୍ତ୍ୱମାନ ମଧ୍ୟରୁ ଯେଉଁଗୁଡ଼ିକ ପ୍ରକୃତରେ ଠିକା ବାହେଲ ବୋଲି ପ୍ରମାଣ ମିଳିବ ସେଗୁଡ଼ିକୁ

ଟଙ୍କୀ ବାହେଲ ସବ୍‌ପ୍ରୋପ୍ରାଇଟେର ବୋଲି ଦରଜ କରି ଅପର ସମସ୍ତଙ୍କୁ ସାଧାରଣ ସ୍ଥିତିବାନ ବୋଲି ଦରଜ କରାଯିବ । ପର୍କି ମାହାଲ କମ୍ବା ସଡାଇଣ ହଜାରୀ ମାହାଲ କମ୍ବା ବାହେଲଦାର ଅଧୀନରେ ଏହି ପ୍ରକାର ସତ୍ୱ ପାଇଲେ ତାହା ପ୍ରମାଣ ଅନୁସାରେ ଚିରସ୍ଥାୟୀ ଜମା କମ୍ବା ସାଧାରଣ ସ୍ଥିତିବାନ ବୋଲି ଦରଜ କରାଯିବ । ଚିରସ୍ଥାୟୀ ଜମା ପ୍ରମାଣ କରିବାର ଭାର ରଏତ ଉପରେ । )

୪ । ଟଙ୍କୀ ଅଧା ଜମା ବାଜ୍ୟାପ୍ତି ସ୍ଥିତିବାନ ।

୫ । ଅଧାଜମା ବାଜ୍ୟାପ୍ତି ସ୍ଥିତିବାନ ।

୬ । ହଷ୍ଟି ବାଜ୍ୟାପ୍ତି ସ୍ଥିତିବାନ ।

୭ । କାମିଲ ବାଜ୍ୟାପ୍ତି ସ୍ଥିତିବାନ ।

୮ । ପୁରା ଜମା ବାଜ୍ୟାପ୍ତି ସ୍ଥିତିବାନ ।

( ଏହି ସମସ୍ତ ନାମ ପରିବର୍ତ୍ତେ କେବଳ ବାଜ୍ୟାପ୍ତି ସ୍ଥିତିବାନ ନାମ ବ୍ୟବହାର ହେବ ।)

୯ । ଜାଗିର ବାଜ୍ୟାପ୍ତି ସ୍ଥିତିବାନ ।

( ଗତ ବନ୍ଦୋବସ୍ତ କାଗଜାତରେ ଯେଉଁଠାରେ ଏହି ସତ୍ୱ ମିଳିବ , ହାଲ ବନ୍ଦୋବସ୍ତରେ ସେ ସ୍ଥଳେ ସତ୍ୱ ଘରେ କେବଳ ସ୍ଥିତିବାନ ଦରଜ ହୋଇ ବିଶେଷ ଅନୁସଙ୍ଗ ଘରେ ସାବକ ଜାଗିର ବୋଲି ଦରଜ ହେବ । )

୧୦ । ଥାନି ପାହି ସ୍ଥିତିବାନ ।

୧୧ । ପାହି ସ୍ଥିତିବାନ ।

୧୨ । ସାବକ ଚନ୍ଦନା ସ୍ଥିତିବାନ ।

୧୩ । କଣ୍ଟଦଖଲ ପଟ୍ଟାଦାର ପାହି ସ୍ଥିତିବାନ ।

୧୪ । ଷୋଳା ପଟ୍ଟାଦାର ସ୍ଥିତିବାନ ।

୧୫ । ବସ୍ତାଲ ବାଙ୍ଗ୍ୟାପ୍ତି ସ୍ୱତ୍ୱ ଜମା ସ୍ଥିତିବାନ ।

୧୬ । ବସ୍ତାଲ ଖରଦାଦାର ଥାନ ସ୍ଥିତିବାନ ।

୧୭ । ଗୃନ୍ଦନା ପାହୁ ସ୍ଥିତିବାନ ।

( ଏହି ସମସ୍ତ ଭିନ୍ନ ଭିନ୍ନ ନାମ ପରିବର୍ତ୍ତେ କେବଳ ସ୍ଥିତିବାନ ବ୍ୟବହାର କରାଯିବ । )

୧୮ । ଥାନି ଦଖଲ ସତ୍ୱ ବିଶିଷ୍ଟ ।

୧୯ । ପାହୁ ଦଖଲ ସତ୍ୱ ବିଶିଷ୍ଟ ।

( ହାଲ ବନ୍ଦୋବସ୍ତରେ ଥାନ ଓ ପାହୁ ମଦ ବ୍ୟବହାର ହେବ ନାହିଁ । କେଉଁ ରଏତ କେଉଁ ଅନାର ସତ୍ୱ ପରେ ଦଖଲ ସତ୍ୱ ବିଶିଷ୍ଟ ଲେଖାଯିବ ତାହା ଉପରେ ବର୍ଣ୍ଣିତ ହୋଇଅଛି ।)

୨୦ । ଦଖଲ ସତ୍ୱ ଶୂନ୍ୟ ।

( ଏ ସମ୍ବନ୍ଧେ ଉପରେ କଥିତ ହୋଇଅଛି । )

୭-ଗୃନ୍ଦନାଦାର — ଗତ ବନ୍ଦୋବସ୍ତମାନଙ୍କରେ କାରିଗର ଓ ବ୍ୟବସାୟୀମାନଙ୍କର ଅର୍ଥାତ୍ ମୌଜାରେ ଅବାଦ ଚୃଷ ଜମି ନ ଥାଇ ଯେଉଁମାନଙ୍କର କେବଳ ବାସ ଉପଯୋଗୀ ଘର ବାଡ ଥିଲା ସେହି ଘର ବାଡ ସକାଶେ ତାଙ୍କ ନାମରେ ଗୃନ୍ଦନା ସତ୍ୱରେ ଖାତା ହୋଇଥିଲା । ପ୍ରଜାସତ୍ୱ ଆଇନର ୩ (୩) ଧାରାରୁ ଦେଖାଯାଏ ଯେ କେବଳ ରାଜସ୍ୱ ବନ୍ଦୋବସ୍ତ ସମୟରେ ଯେଉଁମାନଙ୍କୁ ଗୃନ୍ଦନା ସତ୍ୱ ଦିଆ ଯାଇଅଛି ସେହିମାନେଇ ପ୍ରକୃତରେ ଗୃନ୍ଦନାଦାର । ଅନ୍ୟତ୍ର ମଧ୍ୟ ପ୍ରକାଶ ଯେ ଗୃନ୍ଦନା-ଦାରଙ୍କର ଦେୟ ଖଜଣା ଏକ ରାଜସ୍ୱ ବନ୍ଦୋବସ୍ତଠାରୁ ପାନ ରାଜସ୍ୱ ବନ୍ଦୋବସ୍ତ ପର୍ଯ୍ୟନ୍ତ ପରିବର୍ତ୍ତନ ହୋଇ ନ ପାରେ । ଏଣୁ ଏହାଦ୍ୱାରା ବୁଝାଯାଏ ଯେ, ଯେ କୌଣସି ରାଜସ୍ୱ ବନ୍ଦୋବସ୍ତ ସମୟରେ ନୂଆ ଗୃନ୍ଦନା ସତ୍ୱ ଦିଆ ଯାଇପାରେ କିମ୍ବା ସାବିକ ଗୃନ୍ଦନା ସତ୍ୱ ଲୋପ କରି ପାରିଯାଏ ।

ଅନୁଭବ ମଧ୍ୟ ଦେଖାଯାଉ ଅଛି ଯେ ଗତ ରଭଲ୍ଲନ ବନ୍ଦୋବସ୍ତରେ ନୂଆ ଗୃନ୍ଦନା ପଟ୍ଟ କର୍ ଯାଇଥିଲା । ତାହା ବେଆଇନ ଅଟେ । କାରଣ ରଭଲ୍ଲନ ବନ୍ଦୋବସ୍ତ ରାଜସ୍ୱ ବନ୍ଦୋବସ୍ତ ନ ଥିଲା । ହାଲ ବନ୍ଦୋବସ୍ତ ରାଜସ୍ୱ ବନ୍ଦୋବସ୍ତ ଥିବାରୁ ଏଥିରେ ସାବକର ଗୃନ୍ଦନା ସତ୍ୱ ଲୋପ କର ଓ ନୂଆ ଗୃନ୍ଦନା ପଟ୍ଟ ଦେଇ ପାର୍ଯିବ । ବର୍ତ୍ତମାନ ଯେଉଁମାନଙ୍କୁ ଗୃନ୍ଦନା ସତ୍ୱ ଦିଆଯିବ ସେମାନଙ୍କର ଜମା ସାନ ରାଜସ୍ୱ ବନ୍ଦୋବସ୍ତ ପର୍ଯ୍ୟନ୍ତ କମ୍ ବେଶୀ ହୋଇ ପାରବ ନାହିଁ ।

## କେଉଁମାନେ ପ୍ରକୃତରେ ଗୃନ୍ଦନାଦାର ?

ଅନେକ ବଡ଼ ମୌଜାରେ ବିଶେଷତଃ ସହର ମଧ୍ୟସ୍ଥିତ ମୌଜାମାନଙ୍କରେ କମ୍ବା ଯହିଁରେ ବଜାର ଅଛି ଏପରି ମୌଜାମାନଙ୍କରେ ଅନେକ ଦୋକାନ କାରବାର କରିବା ସକାଶେ ଜମି ନେଇଥାନ୍ତି । ସେ ଜମି ସେମାନଙ୍କ ଚାଷ କରିବା ଉଦ୍ଦେଶ୍ୟ ନୁହେ । କମ୍ବା ତହିଁରେ ପ୍ରଜା ବସାଇ ଖଜଣା ଅଦାୟ କରିବା ବି ଉଦ୍ଦେଶ୍ୟରେ ନୁହେ, ଏହିପରି ରଏତମାନେ ପ୍ରକୃତରେ ଗୃନ୍ଦନାଦାର । ଏହା ଅନେକ ସମୟରେ ଦେଖାଯାଏ ଯେ ଏକ ମୌଜାରେ କାହାର ଚାଷ ଜମି ଥାଇ ସେହି ମୌଜାରେ ତାହାର ଘର ନଥାଇ ପାର୍ଶ୍ୱବର୍ତ୍ତୀ କୌଣସି ମୌଜାରେ ଘର ଅଛି ଓ ଯେଉଁ ମୌଜାରେ ଘର ଅଛି ସେଠାରେ ଚାଷ ଜମି ନାହିଁ, ତାହାର ଘରବାଡ଼ି ସକାଶେ ଗୃନ୍ଦନା ସତ୍ୱ ଦେବା ଠିକ ନୁହେ । କୌଣସି ରଏତର ନିଜ ମୌଜାରେ ପୂର୍ବରେ ଚାଷ ଜମି ଓ ଘର ଥିଲା, କାଳକ୍ରମେ ସମସ୍ତ ଚାଷଜମି ବିକ୍ରି ହୋଇଯାଇ ଅଛି; କେବଳ ଘର ଖଣ୍ଡିକ ଅଛି । ଏପରି ସ୍ଥଳେ ତାହାର ଘର ସକାଶେ ତାହାକୁ ଗୃନ୍ଦନା ସତ୍ୱ ଦେବା ମଧ୍ୟ ଠିକ୍ ନୁହେ । ଏ ବନ୍ଦୋବସ୍ତରେ ଏପରି ଲୋକଙ୍କୁ ରଏତ ସତ୍ୱ ଦିଆଯିବ ।

ଏହା ବିଶେଷରୂପେ ଦେଖିବାର କଥା ଯେ ଗୃନ୍ଦନା ସତ୍ୱ କେବଳ କିଛି ମହାଲମାନଙ୍କରେ ଅଛି ଓ ଦିଆଯିବ । ସବୁ ମହାଲମାନଙ୍କରେ ଏପରି

ସ୍ୱତ୍ୱ ଉଠି ନପାରେ । ଏଣୁକରି କଛିମାହାଲରେ ଯେଉଁମାନଙ୍କୁ ଉପରୋକ୍ତ ମତେ ଚନ୍ଦନାଦାର ବୋଲି ଲେଖା ଯାଇପାରେ ତେବେ ମାହାଲ ହେଲେ ସେମାନଙ୍କୁ "ଘରବାଡ଼ି" ସତ୍ତ୍ୱ ଦିଆଯିବ ।

ସହର ବା ବଜାରମାନଙ୍କରେ (ଅର୍ଥାତ୍ ଯେଉଁ ସ୍ଥଳରେ ଘର ଜମି ମୂଲ୍ୟବାନ) ଅନେକ ଯାବତ୍ ଚନ୍ଦ୍ରାର୍କ ପଟ୍ଟା, ବା ଇସ୍ତମୁରାରି ମୁକରରି ପଟ୍ଟା ପାଇଯାଏ । କଛି ମାହାଲମାନଙ୍କରେ ଏହିପରି ପଟ୍ଟା ଦ୍ୱାରା ସତ୍ତ୍ୱ ଜନ୍ମିଥିଲେ ତାହାକୁ ମଧ୍ୟ ଚନ୍ଦନା ବୋଲି ଦରଜ କରାଯାଇ ପାରେ; କିନ୍ତୁ ରାଜସ୍ୱ ବନ୍ଦୋବସ୍ତରେ ଏମାନଙ୍କ ଜମା ବୃଦ୍ଧି ହୋଇ ପାରିବ କାରଣ ଏହି ପଟ୍ଟାଦାତା ଜମିଦାର ଏହାଦ୍ୱାରା ବାଧ୍ୟ ହେଲେ ସୁଦ୍ଧା ସରକାର ବାଧ୍ୟ ନୁହନ୍ତି ।

୮-ହସ୍ତାନ୍ତର—(କ) ଦେବୋତ୍ତର ଛଡ଼ା ଅନ୍ୟ ସମସ୍ତ ଦେବୋତ୍ତର ଇତର ଓ ଟିକିମି ଖଣ୍ଡିଦା କିମ୍ବା ଖରିଦା ଜମାବନ୍ଦୀ ମଧ୍ୟସତ୍ତ୍ୱାଧିକାରୀ ଓ ବାଜ୍ୟାପ୍ତି ମଧ୍ୟସତ୍ତ୍ୱାଧିକାରୀ ଜମିଦାରର ବିନାନୁମତିରେ ଅପଣାର ଯୋତ ସମ୍ପୂର୍ଣ୍ଣରୂପେ ବା ଖଣ୍ଡ କରି ଦାନ ବିକ୍ରୟ ବା ପ୍ରତିବଦଳ ଦ୍ୱାରା ହସ୍ତାନ୍ତରିତ କରିପାରନ୍ତି । ଏହିପରି ହସ୍ତାନ୍ତର ହେଲେ ଜମିଦାରଙ୍କୁ ଟ ୫୧ କା ଫିସ (ବାଜ୍ୟାପ୍ତି ମଧ୍ୟସତ୍ତ୍ୱାଧିକାରୀଙ୍କୁ ଟ ୨୧) ଦେବାକୁ ହୁଏ । ଜମିଦାର ନେବାକୁ ଆପତ୍ତି କଲେ ଖରିଦଦାର ବା ଦାନଗ୍ରହୀତା କଲେକ୍ଟରୀରେ ଉକ୍ତ ଫିସ ଦାଖଲ କରିପାରନ୍ତି । ହାଲବନ୍ଦୋବସ୍ତରେ ଏପରି ହସ୍ତାନ୍ତର ହୋଇ-ଥିଲେ ଗ୍ରହୀତା ନାମରେ ରେକର୍ଡ ପ୍ରସ୍ତୁତ କରାଯିବ, ଜମିଦାରର ନାମ ଜାରି ପ୍ରୟୋଜନ ନାହିଁ । ଏହା କେବଳ ଉପରୋକ୍ତ ପ୍ରକାର ସତ୍ତ୍ୱର ପୂର୍ଣ୍ଣ ଯୋତ ସ୍ଥାନେ କରାଯାଏ ।

(ଖ) ପ୍ରଜାସତ୍ତ୍ୱ ଆଇନର ଧା ୯୯ ର ଅନୁସାରେ ଯୋତ ଖଣ୍ଡ କରିବାକୁ ହେଲେ ଜମା ବଣ୍ଟନ ସମ୍ବନ୍ଧେ ଜମିଦାରରେ ମଞ୍ଜୁର ଅବଶ୍ୟକ

ସାଧାରଣ ସ୍ଥିତିବାନ ରୟତ ଖଣ୍ଡଯୋତର ହସ୍ତାନ୍ତର ମଞ୍ଜୁର କଲେ ଜମା ଖଣ୍ଡନରେ ମଧ୍ୟ ମାଲିକର ମଞ୍ଜୁର ଅଛି ବୋଲି ବୁଝାଯିବ । କିନ୍ତୁ ପ୍ରଜାସ୍ୱତ୍ୱ ଆଇନର ୧୮ ଦଫା ଅନୁସାରେ ବାଜ୍ୟାପ୍ତି ମଧ୍ୟସ୍ୱତ୍ୱାଧିକାରୀ ପ୍ରଭୃତି ସବୁର ଖଣ୍ଡ ହସ୍ତାନ୍ତର ସ୍ଥଳେ ଜମିଦାରର ଜମା ଖଣ୍ଡନରେ ମଞ୍ଜୁର ନ ଥିଲେ କ୍ରୟଗ୍ରହୀତାକୁ ଜଣେ ଅଲଗ ମଧ୍ୟସ୍ୱତ୍ୱାଧିକାରୀ ବୋଲି ଉପରୋକ୍ତ ନିୟମାନୁସାରେ ସ୍ୱୀକାର କଲେ ସୁଦ୍ଧା ତାହା ନାମେ ପୃଥକ୍ ଖାତା କରାଯିବ ନାହିଁ । ବାଜ୍ୟା ବା ଦାନଦାତା ସହିତ ମୁକ୍ତର ବା ଦାନଗ୍ରହୀତାର ନାମ ଏକସଙ୍ଗରେ ଏକଯୋତର ଅଂଶୀଦାରରୂପେ ଦରଜ କରି ମୁକ୍ତର ଖରଦ କରିଥିବା ଜମିମାନଙ୍କରେ ମୁକ୍ତରର ଦଖଲ ଓ ସେହି ଯୋତର ଅନ୍ୟ ଜମିମାନଙ୍କରେ ବାଜ୍ୟାର ଦଖଲ ଚିହ୍ନାଇ ଦିଆଯିବ । ମାତ୍ର ଯୋତ ଓ ଜମିଦାରଙ୍କୁ ଦେୟ ଜମା ଏକ ରହିବ ।

ଦୃଷ୍ଟାନ୍ତ—୧ । କ ଜଣେ ବାଜ୍ୟାପ୍ତି ମଧ୍ୟସ୍ୱତ୍ୱାଧିକାରୀର ଟ ୩୯ ଙ୍କା ଜମାରେ ତାହା ନାମରେ ଚାରିଗୋଟି ପ୍ଲଟ ଅଛି । ଖ କୁ କ ସମସ୍ତପ୍ଲଟମାନ ବିକ୍ରୟ କରିଦେଲା । ଜମିଦାରର ମଞ୍ଜୁର ଥାଉ ବା ନ ଥାଉ ଖ ନାମେ ସେହି ଚାରିଗୋଟି ପ୍ଲଟ ସକାଶେ ଟ ୩୯ ଙ୍କା ଜମାରେ ରେକର୍ଡ଼ ହେବ ।

୨ । ମାତ୍ର ଖ କୁ କ ଦୁଇଗୋଟି ପ୍ଲଟ ଟ ୧୫ ଙ୍କା ଜମାରେ ବିକ୍ରୟ କଲା । ଖ ଜମିଦାର ଠାରେ ଜମା ଖଣ୍ଡନର ମଞ୍ଜୁର ନେଲା । ଖ ତାହାର ଖରଦ ପ୍ଲଟ ମାନଙ୍କ ସକାଶେ ଟ ୧୫ ଙ୍କା ଜମାରେ ପୃଥକ୍ ଖାତା ପାଇବ ଓ ବାକି ପ୍ଲଟ ଟ ୧୫ ଜମାରେ କ'ର ନାମେ ଖାତା ରହିବ ।

୩ । ଖ ଟ ୧୫ ଜମାରେ ଦୁଇଗୋଟି ପ୍ଲଟ ଖରଦ କରି ଜମିଦାର ଠାରୁ ଜମାଖଣ୍ଡନର ମଞ୍ଜୁର ନେଇନାହିଁ ; କ ଓ ଖ ଉଭୟଙ୍କ ନାମେ ଏକଗୋଟି ଖାତା ହୋଇ ଚାରିଗୋଟି ପ୍ଲଟ ତହିଁରେ ଦରଜ ହେବ ; ଯେଉଁ ପ୍ଲଟ ଖ ଖରଦ କରିଅଛି ତହିଁରେ ଖ'ର ଦଖଲ ଓ ଯେଉଁ ପ୍ଲଟ ବିକ୍ରୟ ହୋଇନାହିଁ ତହିଁରେ କ'ର ଦଖଲ ଚିହ୍ନାଇ ଦିଆଯିବ । ଉକ୍ତ ଯୋତ ହେଲେ କ ଓ ଖ ନାମେ ପୃଥକ୍ ପୃଥକ୍ ଖାତା କରାଯାଇ

କ'ର ଖାତାରେ ଜମା ପୂରଣ କରି ଖ'ର ଖାତାରେ ବରାଦ ଜମା ପୂରଣ କରାଯିବ । (ଏପରି ସ୍ଥଳେ ଖ'ର ଏଭଳି ଲାଭ ଯେ ଜମିଦାର ବାକି ଖଜଣା ସକାଶେ ନାଲିଶକଲେ କ ଓ ଖ ଉଭୟଙ୍କୁ ପ୍ରତିବାଦୀ କରିବାକୁ ହେବ) ।

(ଗ) ବାଯ୍ୟାପ୍ତି ମଧ୍ୟସ୍ବତ୍ଵାଧିକାରୀ ସତ୍ଵ ହସ୍ତାନ୍ତର ସମ୍ବନ୍ଧେ ଉପରେ ଯାହା କୁହାଗଲା ତାହା ମଧ ବାଯ୍ୟାପ୍ତି ସ୍ଥିତିବାନ ସତ୍ଵ ହସ୍ତାନ୍ତରର ନିୟମ; ଅର୍ଥାତ୍ ବାଯ୍ୟାପ୍ତି ସ୍ଥିତିବାନ ସତ୍ଵ ସମ୍ପୂର୍ଣ୍ଣ ବା ଖଣ୍ଡ ହସ୍ତାନ୍ତରରେ ଜମିଦାରର ମଞ୍ଜୁର ଅବଶ୍ୟକ ନାହିଁ । କିନ୍ତୁ ଜମିଦାରର ବିନାନୁମତିରେ ଜମା ଖଣ୍ଡନ ହୋଇ ନପାରେ । ଜମା ଖଣ୍ଡନ ସ୍ଥଳେ ଉପରୋକ୍ତ ଦୃଷ୍ଟାନ୍ତ-ମାନ ଅନୁସାରେ ରେକର୍ଡ଼ କରାଯିବ ।

(ଘ) ଉପରୋକ୍ତ ପ୍ରକାର ସତ୍ଵମାନ ଛଡ଼ା ଅପର ଯେ କୌଣସି ସତ୍ଵର ଖରଦ ବିକ୍ରୟରେ ଜମିଦାରର ମଞ୍ଜୁର ଅବଶ୍ୟକ । ଜମିଦାରର ମଞ୍ଜୁର ନ ଥିଲେ ବାୟୀ ନାମରେ ରେକର୍ଡ଼ କରାଯାଇ ଖରଦ ଜମିରେ ମୁସ୍ତରିର ଦଖଲ ନୋଟ କରାଯିବ । ଜମିଦାରଙ୍କୁ ଜରସମନ ବା ତାହାର ଟଙ୍କା ଉପରେ ଏକଟଙ୍କା ପ୍ରତି ୫ ° । ଦିଆଅଣା ସଲାମି ଦେଲେ ଜମିଦାର ନାମ ଜାରି କରିଦେବେ । ଯଦି ନ ଦିଅନ୍ତି ତାହାହେଲେ ଏକବର୍ଷ ମଧରେ ଜିଲ୍ଲା କଲେକ୍‌ଟରଙ୍କ ପାଖରେ ସଲାମି ଦାଖଲ କରି ନାମ ଜାରି ପ୍ରାର୍ଥନା କରାଯାଇପାରେ । ଜମିଦାର ନାମ ଜାରି ନ କରିବା ପକ୍ଷରେ ସନ୍ତୋଷଜନକ କାରଣ ଦର୍ଶାଇ ନ ପାରିଲେ କଲେକ୍‌ଟର ନାମ ଜାରି କରିବାକୁ ଆଦେଶ ଦିଅନ୍ତି ।

(ଙ) ଉପରେ ହସ୍ତାନ୍ତର ସମ୍ବନ୍ଧେ ଯେ ସମସ୍ତ ନିୟମ କୁହାଗଲା ତାହା କେବଳ କଛି ମାହାଲ ମୌଜାମାନଙ୍କରେ ପ୍ରଚଳିତ; ପର୍କି ମାହାଲ ମୌଜାମାନଙ୍କରେ ଏ ସମ୍ବନ୍ଧେ ଯେଉଁ ସ୍ଥାନୀୟ ପ୍ରଥା ପ୍ରଚଳିତ ଥିବ ତଦନୁସାରେ କାର୍ଯ୍ୟ କରାଯାଏ ।

(ଡ) ହାଇକୋର୍ଟ ରୁଲିଙ୍ଗ ଅନୁସାରେ ଯେଉଁ ସମସ୍ତ ଯୋତ ବାରବର୍ଷର ଊର୍ଦ୍ଧ୍ୱ କାଳରୁ ହସ୍ତାନ୍ତରିତ ହୋଇଅଛି ଓ ସେହି ହସ୍ତାନ୍ତରର ବିଷୟ ଜାଣି ସୁଦ୍ଧା ଜମିଦାର ମୁସ୍ତରି ବା ଦାନଗ୍ରହୀତାକୁ ଉଚ୍ଛେଦ କରିବା ସକାଶେ କୌଣସି ଚେଷ୍ଟା କରି ନାହାନ୍ତି, ତହିଁରେ ମୁସ୍ତରି ବା ଦାନଗ୍ରହୀତାର ବାସ୍ତୁର (ଅର୍ଥାତ୍ ଅସଲ ରଇୟତର) ସତ୍ୱ ଜନ୍ମିବ ଏହିପରି ବାରବର୍ଷ ଊର୍ଦ୍ଧ୍ୱ କାଳର ହସ୍ତାନ୍ତର ହୋଇଥିଲେ ଜମିଦାର ମଞ୍ଜୁର ନଥିଲେହେଁ ହାଲ ବନ୍ଦୋବସ୍ତରେ ଦାତାର ନାମ ପରିବର୍ତ୍ତେ ଗ୍ରହୀତାର ନାମ ଦରଜ ହେବ । ଏହା ପୂର୍ଣ୍ଣ ଯୋତ ସମ୍ବନ୍ଧେ । ଖଣ୍ଡଯୋତ ଏରୂପେ ହସ୍ତାନ୍ତରିତ ହୋଇଥିଲେ ଓ ତହିଁରେ ଜମିଦାରର ମଞ୍ଜୁର ନଥିଲେ, ଉପରେ ଜମିଦାର ମଞ୍ଜୁର ନ ହୋଇଥିବା ଖଣ୍ଡବାସ୍ୟାସ୍ତି ଯୋତ ହସ୍ତାନ୍ତର ଦରଜ କରିବାର ଯେଉଁ ପ୍ରଣାଳୀ କୁହା ଯାଇଅଛି ସେହି ମୁତାବକ ରେକର୍ଡ କରାଯିବ ।

ଉପରେ ଯେଉଁ ହାଇକୋର୍ଟ ରୁଲିଙ୍ଗ୍ କଥା କୁହାଗଲା, ତହିଁରୁ ଏପରି କିଛି ପ୍ରକାଶ ହୁଏନାହିଁ ଯେ ୧୨ ବର୍ଷର ଊର୍ଦ୍ଧ୍ୱ କାଳର ହସ୍ତାନ୍ତର ହେଲା ମାତ୍ରେ ମୁସ୍ତରି ବା ଦାନଗ୍ରହୀତାର ନାମରେ ରେକର୍ଡ ହେବ । ଏହା ବିଶେଷରୂପେ ଦେଖିବାର କଥା ଯେ ଜମିଦାର ମଧ୍ୟ ସେହି ହସ୍ତାନ୍ତରର ବିଷୟ ୧୨ ବର୍ଷର ଊର୍ଦ୍ଧ୍ୱ କାଳରୁ ଅବଗତ ଅଛି ଏବଂ ଏହିବିଷୟ ପ୍ରମାଣ କରିବାର ଭାର ମୁସ୍ତରି ବା ଦାନଗ୍ରହୀତା ଉପରେ ।

(ଛ) ଯେଉଁମାନେ କୌଣସି ଯୋତ ଭୋଗବନ୍ଧକ ବା ଦଖଲ-ବନ୍ଧକ ନେଇଥିବେ ସେମାନେ ତାଙ୍କ ଦଖଲର ପ୍ରମାଣ ସହ ଉକ୍ତ ବନ୍ଧକ ଦଲିଲ ଦେଖାଇଲେ ତାଙ୍କର ସେହି ଯୋତରେ ବନ୍ଧକ ସୂତ୍ରେ ଦଖଲ ନୋଟ କରାଯିବ ।

(ଜ) ଉଇଲ ଦ୍ୱାରା ଯୋତ ହସ୍ତାନ୍ତର କରାଯାଇପାରେ ଏବଂ ଏପରି ହସ୍ତାନ୍ତର ହୋଇଥିଲେ ଅନେକ ସମୟରେ ଜମିଦାର ନାମଜାରି

ସର୍ବାଂଶେ ଅପତ୍ତି କରିବାର ଦେଖାଯାଏ । କିନ୍ତୁ ସେ ଅପତ୍ତି ଆଇନସଙ୍ଗତ ନୁହେଁ । ପ୍ରଜାସତ୍ତ୍ୱ ଆଇନର ୩୧ (୪) ଧାରା ଅନୁସାରେ କୌଣସି ବ୍ୟକ୍ତି ଉତ୍ତରାଧିକାରୀ ସୂତ୍ରେ କୌଣସି ଯୋତ ପାଇଲେ ତାହାକୁ ଜମିଦାରର ମଞ୍ଜୁର ନେବାକୁ ହେବ ନାହିଁ । ୩ (୨୨) ଧାରା ଅନୁସାରେ ଉଇଲ ଦ୍ୱାରା କୌଣସି ସମ୍ପତ୍ତି ପାଇଲେ ତାହା ଉତ୍ତରାଧିକାରୀ ସୂତ୍ରେ ପ୍ରାପ୍ତ ଗଲ୍ପ ବୋଲି ବିବେଚିତ ହେବ ।

(ଝ) "ହେବାନାମା" ମାନେ ଅନେକ ସମୟରେ ଉଇଲ ବୁଝା-ଯାଏ ଏବଂ ଅନେକ ସମୟରେ ଦାନପତ୍ର ବୋଲି ବୁଝାଯାଏ । ଏକ୍ସା ପ୍ରକୃତରେ କଣ ତାହା "ହେବାନାମା" ଦଲିଲର ସର୍ତ୍ତରୁ ପ୍ରକାଶ ପାଇବ ଯଦି "ହେବାଦାତା"ର ଜୀବଦଶାରେ ତାହାର ସମ୍ପତ୍ତିରେ ଗୃହୀତାକୁ ମାଲିକ କରାଇବାର ସର୍ତ୍ତ ଥାଏ ତାହାହେଲେ ତାହା ଦାନପତ୍ର ବୋଲି ବିବେଚିତ ହେବ ଓ ସେହି ଦଲିଲ ଦୃଷ୍ଟେ ଏବଂ ଉପରୋକ୍ତ ନିୟମାନୁସାରେ ହେବା ଗୃହୀତାର ନାମ ଦଖଲ କିମ୍ବା ଦଖଲନୋଟ କରାଯିବ । ଯଦି "ହେବାନାମା"ରେ ଏପରି ସର୍ତ୍ତ ଥାଏ ଯେ ହେବାଦାତାର ମୃତ୍ୟୁ ପରେ ତାହାର ସମ୍ପତ୍ତିରେ ଗୃହୀତା ମାଲିକ ହେବ ତେବେ ତାହା ଉଇଲ ଅଟେ ଏବଂ ହେବାଦାତା ଜୀବିତ ଥିଲେ ଏହି ହେବାନାମା ଦୃଷ୍ଟେ ରେକର୍ଡରେ କୌଣସି ପରିବର୍ତ୍ତନ କରାଯିବ ନାହିଁ । କାରଣ ମୃତ୍ୟୁ ପୂର୍ବରେ ଏକାଧିକ ଉଇଲ କରିବାର ବା ରଦ କରିବାର କ୍ଷମତା ସମସ୍ତଙ୍କର ଅଛି । ମୁସଲମାନମାନେ ହେବ୍‌ମୋହର ଦ୍ୱାରା ନିଜ ସ୍ତ୍ରୀନାମେ ସମ୍ପତ୍ତି ହସ୍ତାନ୍ତର କରନ୍ତି । ତାହା ଦାନପତ୍ର ବୋଲି ବିବେଚନା କରାଯିବ ।

(ଞ) ଚାକରାଣସତ୍ତ୍ୱ ହସ୍ତାନ୍ତର ସମ୍ବନ୍ଧେ ଓ ତାହା ନାମଜାରି ସମ୍ବନ୍ଧେ କୌଣସି ଆଇନନାହିଁ । ପ୍ରଜାସତ୍ତ୍ୱ ଆଇନର ଧା ୨୩୬ର ଅନୁସାରେ ଦେଶୀୟ ପ୍ରଥାନୁସାରେ ଏ ସମ୍ବନ୍ଧରେ ବନ୍ଦୋବସ୍ତ କରାଯିବ ।

୯ । ରୟତି ଯୋତର ଜମା ବୃଦ୍ଧି—ପ୍ରଜାସତ୍ୱ ଆଇନର ଧାରା ୩୪ ର ଅନୁସାରେ ଜମିଦାର ପ୍ରଜାର ଧର୍ମ୍ମତରେ ନିମ୍ନଲିଖିତ ମତେ ପ୍ରଜାର ଖଜଣା ବୃଦ୍ଧି କରିପାରନ୍ତି ।

( କ ) ପ୍ରଜା ରେଜେଷ୍ଟ୍ରି କୃତ ଦଲିଲଦ୍ୱାରା ଆପଣାର ଜମା ବୃଦ୍ଧି କରିବାକୁ ସମ୍ମତି ଦେଇଥିବ । ଯଦି ମାଲିକ ଦେଖାଇ ପାରନ୍ତି ଯେ ତିନିବର୍ଷ ଯାବତ୍ ସେ ବୃଦ୍ଧି ହାରରେ ପ୍ରଜା ଠାରୁ ଖଜଣା ଆଦାୟ କରୁଛନ୍ତି ତାହା-ହେଲେ ଏପରି ଦଲିଲ ନଥିଲେ ସୁଦ୍ଧା କୌଣସି କ୍ଷତି ନାହିଁ ।

( ଖ ) ପ୍ରଜାର ସମ୍ମତି ଥିଲେ ସୁଦ୍ଧା ତାହାର ଦେୟ ଖଜଣା ଉପରେ ଟଙ୍କା ପ୍ରତି ଦୁଇଅଣାରୁ ଉପର ବୃଦ୍ଧି ହୋଇପାରିବ ନାହିଁ । ଯଦି ମାଲିକ ନିଜ ବ୍ୟୟରେ ପ୍ରଜାର ଜମିର ଉନ୍ନତି ସାଧନ କରନ୍ତି ତାହାହେଲେ ଟଙ୍କାପ୍ରତି ଦୁଇଅଣାରୁ ଉପର ବୃଦ୍ଧି ବେଅଇନ ନୁହେଁ । ଅବଶ୍ୟ ପ୍ରଜା ଯେତେଦିନ ପର୍ଯ୍ୟନ୍ତ ଜମିଦାର କୃତ ଉନ୍ନତିର ଫଳଭୋଗୀ ହେବ ତେତେଦିନ ପର୍ଯ୍ୟନ୍ତ ବୃଦ୍ଧି ହାରରେ ଖଜଣା ଦେବ ।

( ଉନ୍ନତି କାହାକୁ କୁହାଯାଇ ପାରେ ତାହା ପଶ୍ଚାତେ ଦେଖ ପ୍ରଜାସତ୍ୱ ଆଇନର ଧା ୮୬ ର )

( ଗ ) ଉପର ଲିଖିତମତେ ରୟତର ଖଜଣା ଥରେ ବୃଦ୍ଧିହେଲେ ଆଉ ପନ୍ଦର ବର୍ଷମଧ୍ୟରେ ପୁନର୍ବାର ବୃଦ୍ଧି ହୋଇ ପାରିବ ନାହିଁ କିମ୍ବା ରାଜସ୍ୱ ବନ୍ଦୋବସ୍ତ ସମୟରେ ହୋଇ ପାରିବ । ଗତ ପ୍ରଭିନ୍ସିଆଲ ବନ୍ଦୋବସ୍ତ ପରେ ଉପରୋକ୍ତ ରୂପେ ପ୍ରଜାର ସମ୍ମତି ଦ୍ୱାରା କେବଳ ମାତ୍ର ଦୁଇଥର ଜମା ବୃଦ୍ଧି କରିବାର ସମୟ ଅତୀତ ହୋଇ ଅଛି । ଏଣୁ ଯଦି କୌଣସି ପ୍ରଜାର ଜମା ଟଙ୍କା ପ୍ରତି ଦୁଇଅଣାରୁ ବେଶୀ ବୃଦ୍ଧି ହୋଇଥାଏ କିମ୍ବା ୧୦। ବା ୧୦।ରୁ କମ ହୋଇଥିଲେ ସୁଦ୍ଧା ଯଦି ତାହା ପନ୍ଦର ବର୍ଷ ଅନ୍ତର ଟଙ୍କା ପ୍ରତି ୧୦/ ବା ତହିଁରୁ କମ ହିସାବରେ ନ ହୋଇ ଏକାଥରକେ ଟଙ୍କା ପ୍ରତି ଦୁଇଅଣାରୁ ବେଶୀ ବୃଦ୍ଧି ହୋଇଥିବାର ଦେଖାଯାଏ ତାହାହେଲେ

ତାହା ବେଆଇନ ବୋଲି ବିବେଚିତ ହେବ । ବେଆଇନ ବୃଦ୍ଧି ହୋଇଥିଲେ ସେହି ବୃଦ୍ଧି ଜମା ଏକାବେଳକେ କାଟିଦେଇ ସାବକ ଜମା ଉସଦକ କରାଯିବ । ଅର୍ଥାତ୍ ଟ ୦/୪ ବୃଦ୍ଧି ଯଦି ଆଇନ ସଙ୍ଗତ ହୁଏ ଏବଂ ଯଦି ଟ ୦/୪॥ ବୃଦ୍ଧି ହୋଇଥାଏ ସେ ସ୍ଥଳେ ପଇସାଟିଏ କାଟିଦେଇ ଦୁଇଅଣା ଉସଦକ ହେବ ନାହିଁ । ନଅପଇସା ଯାକ ବାକି କଟାଯିବ ।

୧୦ । ପାଉତି—ଖଜଣା ଆଦାୟ କର ଜମିଦାର ପ୍ରଜାଙ୍କୁ ପାଉତି ଦେବାକୁ ବାଧ୍ୟ । ଏହି ପାଉତିରେ ଜମି ଜମା କେଉଁ ସନର ଖଜଣା ଇତ୍ୟାଦି ସମସ୍ତ ବିଷୟର ଉଲ୍ଲେଖ ଥିବା ଆବଶ୍ୟକ । ଏହି ବନ୍ଦୋବସ୍ତରେ ଯଦି ଦେଖାଯାଏ ଯେ କୌଣସି ଜମିଦାର ବିଧିମତେ ପାଉତି ନ ଦେଇ ଖଜଣା ଆଦାୟ କରନ୍ତି ତାହାହେଲେ ଧା ୬୬ ରୁ ଅନୁସାରେ ଜମିଦାର-ମାନେ ଦଣ୍ଡନୀୟ ହେବେ । ଏହି ଦଣ୍ଡ ଟ ୫୦ ୧ ପର୍ଯ୍ୟନ୍ତ ଜରିମାନା । ଆସିଷ୍ଟାଣ୍ଟ ସେଟଲ୍ମେଣ୍ଟ ଅଫିସରମାନେ ଜମିଦାରମାନଙ୍କ ନାମରେ ଏହି ଦୋଷପାଇଁ ପ୍ରୋସିଡିଙ୍ଗ କରି କଲେକ୍ଟରଙ୍କୁ ରିପୋର୍ଟ କରିପାରିବେ ।

୧୧ । ଯଦି କୌଣସି ସ୍ଥିତିବାନ କିମ୍ବା ଦଖଲସତ୍ତ୍ୱବିଶିଷ୍ଟ ପ୍ରଜାର ଖତିଆନର ଖଜଣା ଘରେ ଧୂଳିଭାଗ ସଞ୍ଜା କିମ୍ବା ଅନ୍ୟ ଯେ କୌଣସି ପ୍ରକାରର ଭାଗ ବା ସଞ୍ଜା ଉସଦକ ହେବ କିମ୍ବା ଭାଗ ବା ସଞ୍ଜା ଏବଂ ନଗଦ ଖଜଣା ଉଭୟ ପ୍ରକାର ଉସଦକ ହେବ, ତାହାହେଲେ ସେହି ପ୍ରଜା ଭାଗ ପରିବର୍ତ୍ତେ ଯୋତର ନଗଦ ଜମା ଧାର୍ଯ୍ୟ କରାଇବା ନିମନ୍ତେ ପ୍ରଜାସତ୍ତ୍ୱ ଆଇନର ଧା ୪୭ ରୁ ଅନୁସାରେ ଯେ କୌଣସି ସମୟରେ କଲେକ୍ଟରଙ୍କ ପାଖରେ ଦରଖାସ୍ତ କରିପାରେ ଓ ବନ୍ଦୋବସ୍ତ ଚାଲୁଥିବା ସମୟରେ ଆସିଷ୍ଟାଣ୍ଟ ସେଟଲ୍ମେଣ୍ଟ ଅଫିସରଙ୍କ ନିକଟରେ ଏପରି ଦରଖାସ୍ତ ଦାଖଲ କରିପାରେ । ଏ ଦରଖାସ୍ତ ଦେବାର ସମୟର କୌଣସି ମିଆଦ ନାହିଁ । ଏହି ଦରଖାସ୍ତ ପ୍ରତ୍ୟେକଟିରେ ବାରଅଣାର କୋର୍ଟଫିସ ଲାଗେ । ଏପରି ଦରଖାସ୍ତ ହେଲେ ସେଥିରେ ଲେଖାଯାଇଥିବା ପ୍ରାର୍ଥନା ବିଚାର କରାଯିବ ।

୧୬ । ନିଜଗୃଷ—(କ) ଜମିଦାରର ଖାସ ଦଖଲ ଅବାଦ ଜମିକୁ ନିଜଗୃଷ କୁହାଯାଏ । ସ୍ଥିତିବାନ ରୟତର ପ୍ରସଙ୍ଗରେ କୁହାଯାଇ ଅଛି ଯେ ସ୍ଥିତିବାନ ରୟତ ମୌଜାରେ ଥିବା ଯେ କୌଣସି ଜମି ଦଖଲ କଲେ ସେଥିରେ ତାହାର ରୟତିସ୍ୱତ୍ୱ ଜାତ ହେବ । ରୟତ ନିଜଗୃଷ ଜମି ଗୃଷ କରି ଜମିଦାରକୁ ଭାଗ ଦେଉ କିମ୍ବା ନଗଦ ଖଜଣା ଦେଉ ତାହାଦ୍ୱାରା ଏ ଆଇନର କୌଣସି ବ୍ୟତିକ୍ରମ ଘଟିବ ନାହିଁ । ଧୂଳିଭାଗରେ ନିଜଗୃଷ ଜମି ଗୃଷ କରୁଥିଲେ ରୟତ ନାମରେ ସ୍ଥିତିବାନ ସତ୍ୱରେ ଧୂଳିଭାଗ ଜମାରେ ଖତିଆନ ବା ପଟ୍ଟା କରାଯିବ । ଅନେକଙ୍କର ଏପରି ଧାରଣା ଦେଖାଯାଏ ଯେ ଧୂଳିଭାଗରେ ଗୃଷକରୁଥିବା ଜମିରେ ପ୍ରଜାର କୌଣସି ସତ୍ୱ ନାହିଁ । ଧୂଳିଭାଗ ସତ୍ୱ କୌଣସି କମିର ନୁହେଁ, ଏପରି ଧାରଣା ସମ୍ପୂର୍ଣ୍ଣରୂପେ ଭୁଲ ଓ ବେଆଇନ; ଧୂଳିଭାଗ ବୋଲି ସତ୍ୱ ହୋଇପାରେ ନାହିଁ । ତାହା କେବଳ ଏକ ପ୍ରକାର ଖଜଣା । ଖଜଣା ଅର୍ଥେ ଯେ କେବଳ ନଗଦ ଖଜଣା ବୁଝାଏ ତାହା ନୁହେଁ । ଜମିଦାରଙ୍କୁ ଜମି ଭୋଗଦଖଲ ସକାଶେ ପ୍ରଜା ଯାହା ଦିଏ ତାହାହିଁ ଆଇନ ଅନୁସାରେ ଖଜଣା । ତାହା ନଗଦ ହୋଇପାରେ, ଧୂଳିଭାଗ ହୋଇପାରେ, ଦୁଇସେର ତେଲ ହୋଇ-ପାରେ ବା ଅନ୍ୟ ଯେ କୌଣସି ପ୍ରକାରର ଭାଗ ବା ମୂଲ୍ୟବାନ ପଦାର୍ଥ ହୋଇପାରେ । କୌଣସି ସ୍ଥିତିବାନ ପ୍ରଜା ଜମିଦାରର ନିଜଗୃଷ ଜମି ଗୃଷ କରୁଥିବାର ଦାବିକଲେ କେବଳ ଏତିକିମାତ୍ର ଦେଖାଯିବ ଯେ ସେ ପ୍ରକୃତରେ ଗୃଷ କରେ କି ନାହିଁ ଏବଂ ଗୃଷକର ମାଲିକଙ୍କୁ ନଗଦ ଖଜଣା କିମ୍ବା ଭାଗ ଖଜଣା କିମ୍ବା ଅନ୍ୟ କୌଣସି ମୂଲ୍ୟବାନ ପଦାର୍ଥ ଦିଏ କି ନାହିଁ ଅର୍ଥାତ୍ ଜମିଦାର ଏବଂ ସେହି ଦାବୀ କରୁଥିବା ବ୍ୟକ୍ତି ମଧ୍ୟରେ ରଜା ପ୍ରଜା ସମ୍ବନ୍ଧ ଅଛି କି ନାହିଁ ।

( ଖ ) ଅନେକ ସମୟରେ ଦେଖାଯାଏ ଯେ ଜମିଦାର କିମ୍ବା ମଧ୍ୟସତ୍ୱାଧିକାରୀମାନେ ନିଜଗୃଷ ବା ନିଜ ଦଖଲ ଜମି ଗୃଷକରୁଥିବା

ସ୍ଥିତିବାନ ପ୍ରଜାଙ୍କଠାରୁ ସନକବାର ବା ମିଆଦ କବୁଲିୟତ ଲେଖାଇନେଇ ଥାଆନ୍ତି ଓ ସେହି କବୁଲିୟତ ଦେଖାଇ ପ୍ରଜାର ସତ୍ତ୍ୱନାହିଁବା ବିଷୟ ପ୍ରମାଣ କରିବାକୁ ଚେଷ୍ଟା କରନ୍ତି । ଏହି ଚେଷ୍ଟା ସମ୍ପୂର୍ଣ୍ଣ ବୃଥା ! ପ୍ରଜାସତ୍ତ୍ୱ ଆଇନର ଧା ୨୩୨ (୧) (ଏ) ର ଅନୁସାରେ ଏହିପରି କବୁଲିୟତର ସର୍ତ୍ତଦ୍ୱାରା ସ୍ଥିତିବାନ ପ୍ରଜାର ଦଖଲସତ୍ତ୍ୱ ଲୋପରେ କୌଣସି ବାଧା ପଡ଼ିବନାହିଁ ।

୧୩ । ନିଜିଯୋତ— କେଉଁ ଜମିକୁ ନିଜଯୋତ କୁହାଯାଏ । ଅଧିକାଂଶ ଜମିଦାର ଓ ସେମାନଙ୍କର କର୍ମଚାରୀ ଏହି ନିଜଯୋତ ଶବ୍ଦର ଅର୍ଥ ଜାଣନ୍ତି ନାହିଁ; ନିଜର ଯୋତରେ ଅର୍ଥାତ୍ ଖାସ ଦଖଲରେ ଅଛି ବୋଲି ଯେ ଜମି ନିଜଯୋତ ବୋଲି ଆଇନତଃ ପ୍ରମାଣିତ ହେଲ ତାହାନୁହେଁ ।

(କ) ପକ୍କି ମାହାଲର ନିଜିଯୋତ—ଯେଉଁ ଜମି ଜମିଦାରର ଖାସ ଦଖଲରେ ନିଜଯୋତ, ଖମାର, କିମ୍ବା ଖୁଦ୍‌କାସ୍ତ ନାମରେ ଥାଇ ଜମିଦାର ତାହା ୧୯୦୦ ସାଲଠାରୁ ୧୨ ବର୍ଷ ଯାବତ୍ ନିଜର ହଳ ବଳଦରେ ନିଜର ଚାକର କିମ୍ବା ମଜୁରିଆ ମୂଲିଆ ଦ୍ୱାରା ଚାଷକରିବାର ପ୍ରମାଣ ଦେବେ ତାହା ଜମିଦାରର ନିଜଯୋତ ବୋଲି ରେକର୍ଡ ହୋଇ ପାରିବ । କିମ୍ବା ଯେଉଁ ଜମି ସାଧାରଣତଃ ଗ୍ରାମର ପ୍ରଥା ଅନୁସାରେ ନିଜ-ଯୋତ, ଖାମାର, କିମ୍ବା ଖୁଦ୍‌କାସ୍ତ ନାମରେ ଚଳିତ ଥାଇ ଚାଷ ହେଉଥିବ ଓ ୧୯୦୬ ସାଲର ତା ୨୧ ରଖ ଅଗଷ୍ଟ ମାସର ପୂର୍ବରେ ଜମିଦାରର ଖୁଦ୍‌କାସ୍ତ ନିଜଯୋତ ଜମି ବୋଲି ବିଶେଷରୂପେ ଉଲ୍ଲେଖ ହୋଇ ପ୍ରଜା ବିଲି କରାଯାଇଥିବ ତାହାହିଁ ଜମିଦାରର ନିଜଯୋତ ବୋଲି ଚଳିତ ହୋଇପାରିବ ।

ଏହି ସମସ୍ତ ପ୍ରମାଣ ନପାଇଲେ କୌଣସି ଜମି ନିଜଯୋତ ବୋଲି ଧରଣ କରାଯିବ ନାହିଁ ଏବଂ ଯେଉଁ ଜମିଦାର କୌଣସି ଜମିକୁ ନିଜ-

ଯୋଡ ବୋଲି ଦରଜ କରିବାକୁ ପ୍ରାର୍ଥନା କରନ୍ତି ତାହାଙ୍କୁ ଉପରୋକ୍ତ ପ୍ରମାଣମାନ ସନ୍ତୋଷଜନକରୂପେ ଦେଖାଇବାକୁ ହେବ।

## ( ଖ ) କର୍ଚ୍ଚି ମାହାଲର ନିଜିଯୋତ—

( ୧ ) ଯେଉଁ ଜମି ଗତ ରିଭିଜନ ବନ୍ଦୋବସ୍ତରେ ନିଜଯୋତ ବୋଲି ଦରଜ ଅଛି ତାହା ନିଜଯୋତ ଅଟେ।

( ୨ ) ଯେଉଁ ଜମି ଗତ ପ୍ରଭିନ୍ସିଅଲ ବନ୍ଦୋବସ୍ତରେ ନିଜକୃଷ ବୋଲି ଦରଜ ହୋଇଥିଲା ଏବଂ ପୁନର୍ବାର ରିଭିଜନ ବନ୍ଦୋବସ୍ତରେ ମଧ୍ୟ ନିଜକୃଷ ବୋଲି ଦରଜ ହୋଇଥିଲା ତାହା ମଧ୍ୟ ନିଜଯୋତ ଅଟେ ଏବଂ ହାଲ ବନ୍ଦୋବସ୍ତରେ ନିଜଯୋତ ବୋଲି ଦରଜ ହୋଇ ପାରିବ। ଏସବୁସ୍ଥଳେ ଗତ ରିଭିଜନ ବନ୍ଦୋବସ୍ତର ରେକର୍ଡ ଶେଷ ପ୍ରସ୍ତୁତ ଦିନଠାରୁ ଏହି ପ୍ରକାର ଜମି ନିଜଯୋତ ହୋଇଅଛି ବୋଲି ଧରାଯିବ।

ଉପରୋକ୍ତ ଦୁଇପ୍ରକାର ଛଡ଼ା ଅନ୍ୟ କୌଣସି ଜମି ଜମିଦାରର ନିଜଯୋତ ନୁହେ। ହାଲ ବନ୍ଦୋବସ୍ତରେ ପ୍ରଥମ ପ୍ରକାରର ସମସ୍ତ ଜମି ଅର୍ଥାତ୍ ଯେ ସମସ୍ତ ଜମି ରିଭିଜନ ବନ୍ଦୋବସ୍ତରେ ନିଜଯୋତ ବୋଲି ଦରଜ ଥିଲା ତାହା ନିଜଯୋତ ବୋଲି ଧରାଯିବ ଓ ଦରଜ କରାଯିବ। ଦ୍ୱିତୀୟ ପ୍ରକାରର ସମସ୍ତ ଜମି ଅର୍ଥାତ୍ ଯାହା ରିଭିଜନ ବନ୍ଦୋବସ୍ତରେ ନିଜକୃଷ ବୋଲି ଦରଜ ଥିଲା ତାହାକୁ ନିଜଯୋତ ବୋଲି ଦରଜ କରିବାକୁ ଚାହିଲେ ଜମିଦାରମାନଙ୍କୁ ପ୍ରୋଭିନ୍ସିଅଲ ବନ୍ଦୋବସ୍ତ ଖତିଆନର ସହି ମୋହର ଜାବଦା ନକଲ କିମ୍ବା ମାଲିକ ଖତିଆନ କାଢ଼ି ଆଣି ଦେଖାଇବାକୁ ହେବ ଯେ ପ୍ରୋଭିନ୍ସିଅଲ ବନ୍ଦୋବସ୍ତରେ ମଧ୍ୟ ଉକ୍ତ ଜମି ନିଜକୃଷ ବୋଲି ଦରଜ ଥିଲା। ଏହି ପ୍ରୋଭିନସିଅଲ କାଗଜ ନ ଦେଖାଇ ପାରିଲେ ରିଭିଜନରେ ଦରଜ ହୋଇଥିବା ନିଜକୃଷ ଜମିକୁ ନିଜଯୋତ ବୋଲି ଦରଜ କରାଯିବ ନାହିଁ।

( ଗ ) ଜମିର ସତ୍ତ୍ୱ ନିଜକୃଷ୍ଟ ନହୋଇ ନିଜଯୋତ ଲେଖାଗଲେ ଜମିଦାରମାନଙ୍କର ଯେ କି ସୁବିଧା ତାହା ନିମ୍ନରେ କୁହାଗଲା । ସେହି ସୁବିଧାମାନ ଦେଖି ଜମିଦାରମାନଙ୍କର ଏ ବିଷୟରେ ଯତ୍ନବାନ ହେବା ଉଚିତ ।

ନିଜକୃଷ୍ଟ ଜମିରେ ପ୍ରଜାମାନଙ୍କର କପଟ ସହଜରେ ଉପ୍ତୁଜିପାରେ ଛନ୍ଦି ପାରେ ଏବଂ ସେହି ସତ୍ତ୍ୱ ଲୋପରେ ଜମିଦାରମାନଙ୍କର ବାଧା ଦେବାର ଚେଷ୍ଟା ଯେ ଆଇନ ଅନୁସାରେ ବୃଥା ତାହା କୁହାଯାଇ ଅଛି । କିନ୍ତୁ ଜମିର ସତ୍ତ୍ୱ ନିଜଯୋତ ବୋଲି ଦରଜ କରାଇଲେ ତହିଁରେ ପ୍ରଜାର ଦଖଲ ସତ୍ତ୍ୱ ସହଜରେ ଜନ୍ମିବ ନାହିଁ । ନିଜଯୋତ ଜମି ଯଦି ସନକରାର କିମ୍ବା ନିଅଦ କବୁଲିୟତ ଦ୍ୱାରା ପ୍ରଜାବିଲି କରାଯାଏ ତାହାହେଲେ କୃଷିଙ୍କର ଉପ୍ତୁଜ ସତ୍ତ୍ୱ କଦାପି ଜନ୍ମିବ ନାହିଁ । ଯଦି ଏପରି କବୁଲିୟତଦ୍ୱାରା ପ୍ରଜାବିଲି କରା ନଯାଇ ଥାଏ ତାହାହେଲେ ମଧ୍ୟ କୃଷି ମୌଜାର ସ୍ଥିତିବାନ ପ୍ରଜା ହୋଇଥିଲେ ସୁଦ୍ଧା ଏହି ନିଜଯୋତ ଜମିକୁ ଏକାଦିକ୍ରମେ ବାରବର୍ଷ କୃଷ ନକଲେ ତାହାର ସେଥିରେ ଦଖଲ ସତ୍ତ୍ୱ ଜନ୍ମିବ ନାହିଁ । ହାଲ ବନ୍ଦୋବସ୍ତରେ ପ୍ରଜା ବିଲି ହୋଇଥିବା ନିଜଯୋତ ଜମିର ରେକର୍ଡ ନିମ୍ନଲିଖିତରୂପେ ପ୍ରସ୍ତୁତ ହେବ ।

( ୧ ) ଯେଉଁଠାରେ ଦେଖାଯିବ ଯେ ସନକରାର ବା ନିଅଦି କବୁଲିୟତ ଦ୍ୱାରା ପ୍ରଜା ବିଲି ହୋଇଅଛି ସେ ସ୍ଥଳେ ସମସ୍ତ ନିଜଯୋତ ଜମି ସର୍ବାଂଶେ ଜମିଦାର ନାମରେ ଖାତା ପ୍ରସ୍ତୁତ ହେବ ଦଖଲକାର ପ୍ରଜାଙ୍କର ନାମ କେବଳ ମନ୍ତବ୍ୟ ଘରେ ନୋଟ କରାଯିବ । ସେହି ପ୍ରଜାଙ୍କ ନାମେ କୌଣସି ଖତିଆନ କରାଯିବ ନାହିଁ । ମାଲିକ ଇଚ୍ଛାମତେ ପ୍ରଜା ପରିବର୍ତ୍ତନ କରି ପାରନ୍ତି ।

( ୨ ) ଉପର ଲିଖିତ ମୁତାବକ କବୁଲିୟତ ନଥାଇ ଯଦି ନିଜ ଯୋତ ଜମି କୌଣସି ପ୍ରଜାର ଦଖଲରେ ଥିବାର ଦେଖାଯାଏ କିନ୍ତୁ ଯଦି

ସେହି ପ୍ରଜା ଏକାଦିକ୍ରମେ ବାରବର୍ଷରୁ କମ ଦଖଲକାର ଥାଏ ସେ ସ୍ଥଳେ ଦଖଲକାର ପ୍ରଜାନାମେ "ଦଖଲସତ୍ତ୍ୱଶୂନ୍ୟ ବାବତ୍ ନିଜଯୋତ" ସତ୍ତ୍ୱରେ ଖତିଆନ ପ୍ରସ୍ତୁତ କରାଯିବ ।

( ଙ ) ଯେଉଁଠାରେ ଦେଖାଯିବ ଉପରୋକ୍ତ ପ୍ରଜା ବାରବର୍ଷ ଯାବତ୍ ବା ତହିଁରୁ ଊର୍ଦ୍ଧ୍ୱ କାଳ ଦଖଲକାର ଅଛି ସେ ସ୍ଥଳେ ତାହା-ନାମେ "ସ୍ଥିତିବାନ ବାବତ୍ ନିଜଯୋତ" ସତ୍ତ୍ୱରେ ଲେଖା କରାଯିବ ।

## (ଘ) କେଉଁମାନଙ୍କର ନିଜଯୋତ ସତ୍ତ୍ୱ ରହିପାରେ ?

ଏହି ନିଜଯୋତ ସତ୍ତ୍ୱ କେବଳ ମାତ୍ର ଭୂମ୍ୟଧିକାରୀମାନଙ୍କର ଏବଂ ଠିକି-ଆଦେହଲଦାର ଛଡ଼ା ଅନ୍ୟ ସମସ୍ତ ସବ୍ ପ୍ରୋପ୍ରାଇଟରମାନଙ୍କର ରହିବ ।

## ୧୪-ଜମିଦାର ବା ମଧ୍ୟସତ୍ତ୍ୱାଧିକାରୀମାନଙ୍କଦ୍ୱାରା ରଯ୍ୟତି ସତ୍ତ୍ୱ ପାଇବାର ଫଳ —

( କ ) ଲ ଅବ୍ ମରଜର ( **Law of Murger** ) ଦ୍ୱାରା ବୁଝାଯାଏ ଯେ ବଡ଼ ସତ୍ତ୍ୱ ବିଶିଷ୍ଟ ଲୋକ ଆପଣା ଅଧୀନସ୍ଥ ଛୋଟ ସତ୍ତ୍ୱ ପ୍ରାପ୍ତହେଲେ ତାହାର ବଡ଼ ସତ୍ତ୍ୱରେ ସେହି ଛୋଟ ସତ୍ତ୍ୱ ଲୋପପାଏ । ପ୍ରଜାସତ୍ତ୍ୱଆଇନର ୨୨ଧାରାରେ ଦେଖାଯାଏ ଯେ ଯଦି ଷୋଳଅଣା ଜମିଦାର କିମ୍ବା ମଧ୍ୟସତ୍ତ୍ୱାଧିକାରୀ ଆପଣାର ଅଧୀନସ୍ଥ ଦଖଲସତ୍ତ୍ୱବିଶିଷ୍ଟ ରଯ୍ୟତି ଯୋତ ହସ୍ତଗତ କରନ୍ତି, ତାହାହେଲେ ସେହି ରଯ୍ୟତି ଯୋତ ପକ୍ଷେ ତାହାଙ୍କର ରଯ୍ୟତି ସତ୍ତ୍ୱ ରହିବ ନାହିଁ । ସେହି ଜମି ତାହାଙ୍କର ମାଲିକ ସତ୍ତ୍ୱ ଅନ୍ତର୍ଗତ ସେ ଭୋଗ ଦଖଲ କରିବେ । ଅର୍ଥାତ୍ ଜମିଦାର କିମ୍ବା ସବ୍ ପ୍ରୋପ୍ରାଇଟର ଯଦି ଆପଣା ଅଧୀନସ୍ଥ ସ୍ଥିତିବାନ ବା ଦଖଲ ସତ୍ତ୍ୱ ବିଶିଷ୍ଟ ପ୍ରଜାର ଯୋତକୁ ଖରିଦ କରେ, ତାହାହେଲେ ସେହି ଜମି ସଦାପେ ତାହାଙ୍କ ନାମେ ରଯ୍ୟତି ଖାତା ନହୋଇ ତାହା ସେମାନଙ୍କର ନିଜଯୋତ ବାବତ ଦରଜ ହେବ ।

( ଖ ) ଏହି ବନ୍ଦୋବସ୍ତରେ ଏହିପରି ଖରିଦ ଯେପରି ଆଇନ ଅନୁସାରେ ଦରଜ ହୁଏ ତାହାପ୍ରତି ବିଶେଷ ସତର୍କ ଦୃଷ୍ଟି ରଖାଯିବ ।

( ଗ ) ଉପରେ ଯେ ଆଇନର ଉଲ୍ଲେଖ କରାଗଲା ତାହା କେବଳ ଷୋଳପଣି ମାଲିକ ଯେ ସ୍ଥଳେ ରୟତି ସତ୍ତ୍ୱ ହସ୍ତଗତ କରିଥିବେ ସେହି ସ୍ଥଳେ ବ୍ୟବହାର ହେବ । ଯଦି ଅଂଶୀଦାର ମାଲିକ ( ଅର୍ଥାତ୍ ଯେଉଁ ମାଲିକର ମାଲିକ ସତ୍ତ୍ୱରେ ଷୋଳଅଣା ଅଂଶ ନଥାଇ ଅପର ଅଂଶୀଦାର ଥାଆନ୍ତି ) ଆପଣା ଅଧୀନସ୍ଥ ରୟତି ସତ୍ତ୍ୱ ହସ୍ତଗତ କରନ୍ତି ତାହାହେଲେ ସେହି ଜମି ସେହି ଅଂଶୀଦାର ନିଜର ଖାସ ଦଖଲରେ ରଖିଯାଇବେ । କିନ୍ତୁ ସାବିକ ରୟତିର ଜମାରୁ ଅପର ଅଂଶୀଦାରମାନେ ଯେଉଁ ଟଙ୍କା ପାଇବାର ହକଦାର ତାହା ଦଖଲକାରୀ ଅଂଶୀଦାର ମାଲିକ ସେମାନଙ୍କୁ ଦେବେ । ଏହି ଜମି ଉପରେ ମଧ୍ୟ ମାଲିକର ରୟତି ସତ୍ତ୍ୱ ଜାତ ହେବନାହିଁ । ବନ୍ଦୋବସ୍ତରେ ଦଖଲକାର ମାଲିକ ନାମେ ଏହିପରି ଜମି ସକାଶେ ପୃଥକ ଖାତା ହେବ । ସତ୍ତ୍ୱ ଘରେ ଲେଖାଯିବ ନିଜଚାଷ ବା ନିଜ ଦଖଲ ମୁତାବକ ଦ୨୬ (୨) ଧା ବିଶେଷ ଅନୂଦଙ୍କ ଘରେ ନିଜଅଂଶ ବାଦ୍ ଅପର ଅଂଶୀଦାରମାନେ ସେହି ଜମି ସକାଶେ ଯେତେ ଟଙ୍କା ପାଆନ୍ତି ତାହା ଉଲ୍ଲେଖ କରାଯିବ ।

( ଘ ) ଯଦି କୌଣସି ଅଂଶୀଦାର ମାଲିକଙ୍କର ମାଲିକ ସତ୍ତ୍ୱରେ ଅଂଶଲାଭ ପୂର୍ବରୁ ରୟତି ସତ୍ତ୍ୱ ଚାଲି ଆସୁଥାଏ ଏବଂ ପରେ ସେ ମାଲିକ ସତ୍ତ୍ୱରେ ଅଂଶଲାଭ କରନ୍ତି ତାହାହେଲେ ତାଙ୍କର ସେ ରୟତି ସତ୍ତ୍ୱ ଲୋପ ପାଇବ ନାହିଁ । ( ବିଶେଷ ଦ୍ରଷ୍ଟବ୍ୟ— ଷୋଳପଣ ମାଲିକଙ୍କର ଏ ସୁବିଧା ନାହିଁ ।)

( ଙ ) ଜମିଦାରମାନେ ଆପଣା ଅଧୀନସ୍ଥ ବାଯ୍ୟାପ୍ତି ମଧ୍ୟସତ୍ତ୍ୱାଧିକାରୀ ବା ବାଯ୍ୟାପ୍ତି ସ୍ଥିତିବାନ ସତ୍ତ୍ୱ ପ୍ରାପ୍ତ ହେଲେ ତାହା ଲୋପ ହେବନାହିଁ ।

( ଷୋଳପଣ ମାଲିକଙ୍କର ମଧ୍ୟ ଏ ସୁବିଧା ଅଛି । )

୧୫ । ମାଲିକଙ୍କର ଅନାବାଦୀ—( କ ) ହାଲ ବନ୍ଦୋବସ୍ତରେ ଅନାବାଦୀଜମି କଟି ମାହାଲରେ ୩ ଭାଗରେ ଓ ପକ୍କି ମାହାଲରେ ୨ ଭାଗରେ ରେକର୍ଡ଼ କରା ଯାଉ ଅଛି । ଯଥା — କଟିମାହାଲରେ ୧ । ସର୍ବ ସାଧାରଣ ୨ । ରକ୍ଷିତ, ୩ । ଅନାବାଦୀ । ପକ୍କି ମାହାଲରେ ୧ । ସର୍ବସାଧାରଣ, ୨ । ଅନାବାଦୀ ।

( ଖ ) ଯେଉଁ ଜମିରେ ସର୍ବସାଧାରଣଙ୍କର ସତ୍ତ୍ୱ ଥିବାର ଦେଖାଯିବ ତାହା ସର୍ବସାଧାରଣ ଖାତାରେ ରହିବ । ଯଥା — ରାସ୍ତା, ଶ୍ମଶାନ, ବଜେସ୍ଥଳ, ଭଗବତ ଘର ପ୍ରଭୃତି । ଯେଉଁ ଜମି ଗ୍ରାମବାସୀମାନଙ୍କର ବିଶେଷ ପ୍ରୟୋଜନୀୟ ଓ ଯାହା ପ୍ରଜାମାନେ ଆବାଦୀ କଲେ ଗ୍ରାମବାସୀମାନଙ୍କର ବିଶେଷ ଅସୁବିଧା ହେବ ତାହା ଆବାଦରୁ ରକ୍ଷା କରିବା ନିମନ୍ତେ ରକ୍ଷିତ ଖାତାରେ ଦରଜ କରାଯିବ । ଗୋଚର, ଗୋଦଣ୍ଡା, ପାଣିନାଳ, ପୋଖରୀ, ପୋଖରୀଅଡ଼ା ରକ୍ଷିତ ହେବା ଉପଯୁକ୍ତ । ଏ ସମସ୍ତ ଜମି ରକ୍ଷିତ ହେଲେ ତାହା ଯଦି କେହି ଆବାଦ କରେ ତାହାହେଲେ ତାକୁ ଫୌଜଦାରୀ ଆଇନ ଅନୁସାରେ ଦଣ୍ଡନୀୟ ହେବାକୁ ହେବ । ଅନେକ ଜମିଦାରମାନଙ୍କ କର୍ମଚାରୀମାନେ ଏପରି ଭୁଲ ଧାରଣା ଦେଖାଇ ଥାନ୍ତି ଯେ ଜମି ରକ୍ଷିତ ହେଲେ ତାହା ସରକାରୀ ହୋଇଯିବ ଓ ଜମିଦାରମାନେ ତହିଁରେ ଫଳ-ଭୋଗୀ ହୋଇ ପାରିବେ ନାହିଁ । ଏ ଧାରଣା ସମ୍ପୂର୍ଣ୍ଣ ଭୁଲ । ଗୋଚର ଜମିମାନଙ୍କରେ ଥିବା ଫଳ ବୃକ୍ଷମାନ ବା ପୋଖରୀରେ ଥିବା ମତ୍ସ୍ୟାଦି ଜମିଦାରଙ୍କ ସମ୍ପତ୍ତି ଓ ସର୍ବସାଧାରଣ ବା ରକ୍ଷିତ ଖାତାରେ ଏ ଜମିମାନ ଦରଜ ହେଲେ ମଧ୍ୟ ଜମିଦାରଙ୍କର ସେ ସତ୍ତ୍ୱ ନଷ୍ଟ ହେବନାହିଁ । ଏଣୁ କୌଣସି ଜମି ରକ୍ଷିତ ଖାତାରେ ଦରଜ କରିବା ନିମନ୍ତେ ଜମିଦାରଙ୍କର ବା ତାଙ୍କ କର୍ମଚାରୀମାନଙ୍କର ଅସମ୍ମତ ହେବା ଅନୁଚିତ । ରକ୍ଷିତ ଖାତା-ଭୁକ୍ତ ଜମିରେ ଥିବା ଗଛ ବା ପୋଖରୀର ମାଛ ପ୍ରଭୃତିରେ ରୟତମାନଙ୍କର କୌଣସି ପ୍ରକାରର ସତ୍ତ୍ୱ ନାହିଁ ।

( ଗ ) ଉପରୋକ୍ତ ସର୍ବସାଧାରଣ ଓ ରକ୍ଷିତ ଛଡ଼ା ଆଉ ସମସ୍ତ ଜମି ଅନାବାଦୀ ଖାତାରେ ଦରଜ ହେବ । ପ୍ରଜାସତ୍ୱ ଆଇନର ଦ ୭୧ ଧା ଅନୁସାରେ ଅନାବାଦୀ ଜମି ଆବାଦ କରିବାକୁ ହେଲେ ପ୍ରଜାଙ୍କୁ ମାଲିକର ଲିଖିତ ଅନୁମତି ଅମଲନାମା ନେବାକୁ ହେବ । ଯଦି କୌଣସି ପ୍ରଜା ମାଲିକର ବିନାନୁମତିରେ ଅନାବାଦୀ ଜମି ଭାଙ୍ଗେ ତାହାହେଲେ ଚାରିବର୍ଷ ମଧ୍ୟରେ ମାଲିକ ପ୍ରଜାଙ୍କୁ ସେହି ଜମିରୁ ଉଚ୍ଛେଦ କରିବା ନିମନ୍ତେ କଲେକ୍ଟରଙ୍କ ନିକଟରେ ନାଲିସ କରି ପାରନ୍ତି ।

( ୧ ) ହାଲ ବନ୍ଦୋବସ୍ତରେ ଯେଉଁ ପ୍ରଜାମାନେ ଚାରିବର୍ଷ ମଧ୍ୟରେ ମାଲିକର ବିନା ଅନୁମତିରେ ଅନାବାଦୀ ଜମି ଭାଙ୍ଗିଥିବାର ଦେଖାଯାନ୍ତି ସେହି ଜମି ସକାଶେ ସେହି ପ୍ରଜା ନାମେ " ବେବନ୍ଦୋବସ୍ତି ନୟାବାଦୀ-ଯୋତ " ସତ୍ୱରେ ଖାତା କରାଯାଏ ।

( ୨ ) ଚାରିବର୍ଷର ଉପର କାଳରୁ ଅନାବାଦୀ ଜମି ଭାଙ୍ଗିଥିବାର ପ୍ରମାଣ ମିଳିଲେ ପ୍ରଜାଙ୍କ ନାମେ ସେହି ନୟାବାଦୀ ଜମି ସକାଶେ ସ୍ଥିତିବାନ ବା ଦଖଲ ସତ୍ୱ ବିଶିଷ୍ଟ ଖାତା କରାଯିବ ।

୧୬ । ଜାଗିର—( କ ) ଯଦି କୌଣସି ଲୋକ ମାଲିକର କାମ କରି ବେତନ ପରିବର୍ତ୍ତେ ଜମି ପାଏ ଓ ସେହି ଜମି ସକାଶେ କୌଣସି ଖଜଣା ଦିଏନାହିଁ ତାହାହେଲେ ସେହି ଜମିରେ ତାହାର ରୟତି ସତ୍ୱ ନହୋଇ ଜାଗିରସତ୍ୱ ହୋଇଥାଏ । ମାଲିକର କାମ ଯେ ଯେତେବେଳେ କରିବ ସେ ସେହି ଜମି ଭୋଗ ଦଖଲ କରିବ ଏବଂ ମାଲିକ ସେ ଜମିକି ଯାହାକୁ ଇଚ୍ଛା ଦେଇ ପାରିବେ । ଅନେକ ସମୟରେ ଦେଖାଯାଏ ଯେ ଅନେକ ମାଲିକ କୌଣସି କୌଣସି ଯୋତକୁ ତେଲି ଜାଗିର, ମୋତ ଜାଗିର ବା ଧୋବା ଜାଗିର ବୋଲି ଦରଜକରାଇବାକୁ ଚାହାନ୍ତି । ଏସମସ୍ତ ପ୍ରକୃତରେ ଜାଗିର ନୁହେଁ । ତେଲି ଜାଗିର ଅର୍ଥ ତେଲି ରୟତ ନଗଦ ଖଜଣା ନଦେଇ

ତାହାର ପରିବର୍ତ୍ତେ କେତେକ ପରିମାଣ ତେଲ ଦିଏ । ମୋଟ ନୂଆ ଯୋତା ଦିଏ । ଅପର କେହି ପୂଜା ପାର୍ବଣରେ ନିର୍ଦ୍ଦିଷ୍ଟ ସଂଖ୍ୟକ ବୋଦା ଦିଏ । ଏଣୁ ତାହା ନଗଦ ବା ଭାଗ ଖଜଣା ନହେଲେ ସୁଦ୍ଧା ଖଜଣା ଅଟେ । କେବଳ ଶାରୀରିକ ପରିଶ୍ରମର ବେତନ ସ୍ୱରୂପ ଯେଉଁ ଜମି ମାଲିକମାନେ ଦିଅନ୍ତି ତାହାହିଁ ପ୍ରକୃତରେ ଜାଗିର । ମାଲିକ ଯଦି ସୋରିଷ ବା କରଞ୍ଜ ଦିଅନ୍ତି ଏବଂ ତେଲି ଯଦି ତାହା ଘଣା ପକାଇ ତେଲ କାଢି ଦେବାପାଇଁ ଜମି ପାଇଥାଏ, ମୋଚି ଯଦି ମାଲିକଠାରୁ ଚମଡା ସୂତା ପ୍ରଭୃତି ଆଣି କେବଳ ଯୋତା ପ୍ରସ୍ତୁତ କରି ଦେବାପାଇଁ ଜମି ପାଇଥାଏ ତାହାହେଲେ ତାହା ପ୍ରକୃତ ଜାଗିର ଜମି ।

(ଖ) ଉପରେ ଯେ ଜାଗିର ଜମିର ଉଲ୍ଲେଖ କରାଗଲା ତାହା କେବଳ ଜମିଦାର, ଲାଖରାଜଦାର ବା ମଧ୍ୟସ୍ୱତ୍ୱାଧିକାରୀର ଦିଆ ଜାଗିର । ଅର୍ଥାତ୍ ମାଲିକର କୌଣସି କାମ କରିଦେବା ସକାଶେ ଯେଉଁ ଜମି ମିଳିଥାଏ । ଏହାଛଡ଼ା ଅପର ଏକ ପ୍ରକାର ଜାଗିର ଅଛି; ତାହାକୁ ଦେଶହେତା ବା ଗ୍ରାମସେବକ ଜାଗିର କହନ୍ତି । ପ୍ରଥମୋକ୍ତ ଜାଗିର ଜମି ସକାଶେ ଜମିଦାରମାନଙ୍କ ଠାରୁ ଭାଲୁଏସନ୍ ଜମା ହିସାବରେ ରାଜସ୍ୱ ଅଦାୟ ହୁଏ । ଦେଶହେତା ବା ଗ୍ରାମସେବକ ଯାଗିର ସକାଶେ ରାଜସ୍ୱ ମାଫ । ମୌଜାରେ ବାରିକ ଦରକାର । କିନ୍ତୁ ମୌଜାରେ ଏତେ ଲୋକ ନାହାନ୍ତି ଯେ ସେମାନଙ୍କର କାମ ଦାମ କରି ତହିଁରୁ ଉପାର୍ଜନକରି ଗୋଟିଏ ବାରିକ ଚଳିପାରେ । ଅତଏବ ଏପରି ମୌଜାରେ ବାରିକ ବା କମାର ବା ବଢେଇ ଆଣି ବସାଇବା ସକାଶେ ପ୍ରଥମେ ସେମାନଙ୍କୁ କେତେକ ଜମି ଦିଆ ଯାଇଥିଲା । ଜମିଦାରର କୌଣସି ବେଠି ଖଟିବା ସକାଶେ ନୁହେଁ । କେବଳ ଗ୍ରାମବାସୀମାନଙ୍କର ସୁବିଧା ନିମନ୍ତେ । ଏଥିରୁ ଏପରି ବୁଝିବାର କୌଣସି କାରଣ ନାହିଁ ଯେ ଗ୍ରାମ ସେବକ ଜାଗିରଦାର ସମସ୍ତ ଗ୍ରାମବାସୀଙ୍କର ବେଠି ଖଟିବ । ତାହାକୁ ସେ ଗ୍ରାମକୁ ଆଣି ବସାଇବା

ନିମନ୍ତେ ଜମି ଦିଆ ହୋଇଥିଲା । ଏ ବନ୍ଦୋବସ୍ତରେ ଗ୍ରାମ ସେବକ ଓ ଦେଶହେତା ଦୁଇପ୍ରକାର ନାମ ନରହି କେବଳ ଦେଶ ହେତା ନାମ ବ୍ୟବହାର କରାଯିବ ।

( ଗ ) ଯେଉଁଠାରେ ଦେଶ ହେତା ଜାଗିରଦାର ଆପଣାର ପେଶା କରୁନାହିଁ; ଅଜା ବଡେଇ ଜାଗିରଦାର ଥିଲା, ନାତି ଓକିଲ ସିରସ୍ତାରେ ମୋହରର ହୋଇ ସହରରେ ଥାନ୍ତି; ଗ୍ରାମବାସୀମାନେ ଅପର ବଡେଇ ଦ୍ୱାରା ଆପଣାର କର୍ମ କରାନ୍ତି; ସେଠାରେ ସାବକର ଏପରି ଜାଗିର ସତ୍ୱ ଲୋପ କରି ତାହା ଜମାଧାର୍ଯ୍ୟ ଯୋଗ୍ୟ ହେବା ଉଚିତ । ଆହୁରି ମଧ୍ୟ ଦେଶହେତା ଜାଗିରଦାର ଆପଣାର ଜାଗିର ଜମି ଅନ୍ୟ ପେଶାର କାହାରକୁ ବିକ୍ରୀ କରି ଦେଇ ଅଛି ଓ କ୍ରେତା ସେହି ଜମି ଦଖଲକାର ଅଛି, ସେଠାରେ ମଧ୍ୟ ଏପରି ସତ୍ୱ ଲୋପ କରି ସେ ଜମିର ଜମାଧାର୍ଯ୍ୟ ଯୋଗ୍ୟ କରାଯିବ ।

( ଘ ) ସାବକ ରଭେନ୍ସ ବନ୍ଦୋବସ୍ତ କାଗଜରେ ସ୍ଥିତିବାନ ବାବତ ଜାଗିର ବୋଲି ଗୋଟିଏ ସତ୍ୱ ଦେଖାଯାଏ । ଏହା ଅର୍ଥ ଶୂନ୍ୟ । ଯଦି ଜାଗିର ହୁଏ ତାହାହେଲେ ସ୍ଥିତିବାନ ହୋଇପାରେ ନାହିଁ । ଯଦି ସ୍ଥିତିବାନ ହୁଏ ତାହାହେଲେ ଜାଗିର ହୋଇପାରେ ନାହିଁ । ଏ ସ୍ଥଳେ ଦେଖିବାର ବିଷୟ ଏହି ଯେ ପୂର୍ବରେ ସେହି ଯୋତ କେବେ ରଯ୍ୟତି ଯୋତ ଥିଲା କି ନାହିଁ । ଅନେକ ସମୟରେ ଏପରି ହୁଏ, କାହାର ଖଜଣା ଦିଆ ଜମିର ଜମା ଜମିଦାରର କୌଣସି ବେଠି କରିବା ନିମନ୍ତେ ମାଫ ଦିଆଯାଏ; ଏ ସ୍ଥଳେ ସେ ପ୍ରକୃତ ପକ୍ଷେ ସ୍ଥିତିବାନ ପ୍ରଜା । ଖଜଣା ଘରେ ଖଜଣା ନ ଲେଖି ବିଶେଷ ଅନୁଧିଙ୍ଗ ଘରେ ଜମିଦାରର ବେଠି କରୁଥିବାରୁ ଖଜଣା ମାଫି ଉଲ୍ଲେଖ ହେବ । ତାହାହେଲେ ହିଁ ହେବ ସ୍ଥିତିବାନ । ଯଦି ପ୍ରମାଣ ମିଳେ ମାଲିକର ବେଠି କରିବା ସର୍ତ୍ତରେ ଦିଆଯାଇଥିବା ...

ଯୋତର ସୃଷ୍ଟି ତାହାହେଲେ ତାହାର ସତ୍ୱ କୌଣସି ମତେ ସ୍ଥିତିବାନ ହୋଇ ନ ପାରେ ।

**୧୭ । ସରକାରୀ ଜମି**— ପ୍ରଜାସତ୍ୱ ଆଇନର ଧା ୫୫ ସ୍ର ଅନୁସାରେ ସରକାରୀ ଜମିମାନଙ୍କରେ ଅର୍ଥାତ୍ ଯେଉଁ ଜମି ସରକାରଙ୍କ ନାମନ୍ତେ କିମ୍ବା ଡିଷ୍ଟ୍ରିକ୍ଟବୋର୍ଡ, ମ୍ୟୁନିସ୍‌ପାଲିଟି, କିମ୍ବା ରେଲୱେ କୋମ୍ପାନି ପ୍ରଭୃତି ନାମନ୍ତେ ସରକାରଙ୍କ ଦ୍ୱାରା ଏକୱାର କରା ହୋଇଥିବ ତହିଁରେ କେହି ଦଖଲ କରୁଥିଲେ ସୁଦ୍ଧା ତାହାର ଆଇନ ଅନୁସାରେ କୌଣସିପ୍ରକାର ସତ୍ୱ ଜାତ ହେବନାହିଁ । ସଡ଼କର ନୟନଯୋଡମାନଙ୍କରେ ଘରବାଡି କରିବା ପକାଶେ ଅନେକ ସମୟେ ସରକାର ତରଫରୁ ମଞ୍ଜୁର ଦିଆଯାଏ । ସେ ସ୍ଥଳେ ଦଖଲକାର ବ୍ୟକ୍ତିମାନଙ୍କ ନାମରେ ଖତିଆନ ହେବ ନାହିଁ । କେବଳ ଦଖଲ ଜମି ମନ୍ତବ୍ୟରେ ଦଖଲକାର ବ୍ୟକ୍ତିଙ୍କର ଦଖଲ ନୋଟ କରାଯାଇ ତାହା ସରକାରଙ୍କ ଖାତାରେ ରଖାଯିବ ।



## ଦ୍ୱିତୀୟ ଭାଗ

# ଖାନାପୁରି



୧ । ପଞ୍ଚ ମାହାଲ ମୌଜାମାନଙ୍କରେ ସର୍ବ ପ୍ରଥମେ ଟ୍ରାଭର୍ସ ପାର୍ଟୀ ଦ୍ୱାରା ଟ୍ରାଭର୍ସ ଲାଇନ ବସାଯାଇ ମୌଜାର ବହିଃସୀମାନା ନିର୍ଦ୍ଦେଶ ହୁଏ । ଏହି ସମୟରେ ଏହି ସମ୍ବନ୍ଧେ ନୋଟିସ ପାଇଲେ ଜମିଦାରମାନେ ମୌଜାର ସୀମା ନିର୍ଦ୍ଦେଶ କରିବାକୁ ବାଧ୍ୟ; ନ କଲେ ସର୍ଭେ ଆକ୍ଟ ଅନୁସାରେ ସେମାନେ ଦଣ୍ଡନୀୟ ହେବେ । ଟ୍ରାଭର୍ସ ପାର୍ଟୀ ମୌଜାରେ ଆସି ପହଞ୍ଚିଲେ ଜମିଦାର ଓ ଗ୍ରାମବାସୀମାନେ ଆପଣା ଆପଣା ମୌଜାର ସୀମା ନିର୍ଦ୍ଦେଶ କରାଇ ଦେବେ । ଏବଂ ସର୍ଭେ ଆକ୍ଟ ଅନୁସାରେ ସମସ୍ତଙ୍କୁ ହାଜର ହେବା ନିମନ୍ତେ ବାଧ୍ୟ କରାଯାଇ ପାରିବ ।

୨ । ( କ ) ଟ୍ରାଭର୍ସ ସରିଲା ଉତ୍ତାରୁ କାଡେଷ୍ଟ୍ରାଲ ସର୍ଭେ ଆରମ୍ଭ ହୁଏ । ସର୍ଭେ ଅମିନ ମୌଜାକୁ ଆସି ସର୍ବ ପ୍ରଥମେ ମୌଜାର ବାଉଣ୍ଡ୍ରେରୀ ସରଜମିନ ମୁତାବକ ନକ୍ସାରେ ଅଙ୍କନ କରେ । ଯଦି ବାଉଣ୍ଡ୍ରେରୀ ସମ୍ବନ୍ଧେ କୌଣସି ବିବାଦ ଉପସ୍ଥିତ ହୁଏ, ତାହାହେଲେ ଅମିନ ଇନ୍ସପେକ୍ଟରଙ୍କୁ ଜଣାଇଲେ ସେ ବିଧିମତେ ବାଉଣ୍ଡ୍ରେରୀ ଡିସ୍ପ୍ୟୁଟ ଦାଏର କରିବେ । ଏହି ଡିସ୍ପ୍ୟୁଟ ଖାନାପୁରୀ ଅଫିସର ପ୍ରମାଣ ନେଇ ଫଏସଲ କରନ୍ତି । ଖାନାପୁରୀ ଅଫିସରଙ୍କ ରାୟ ବିରୁଦ୍ଧେ ଅପିଲ କରିବାକୁ ହେଲେ ତାହା ସେଟଲମେଣ୍ଟ ଅଫିସରଙ୍କ ନିକଟରେ କରିବାକୁ ହେବ ଓ ଏହି ଅପିଲର ମିଆଦ

ଖାନାପୁରୀ ଅଫିସରଙ୍କ ରାଏ ପ୍ରକାଶ ଦିନଠାରୁ ଏକମାସ ପର୍ଯ୍ୟନ୍ତ । ମିଆଦ ମଧ୍ୟରେ ଅପିଲ ଦାଏର ନ କଲେ ଖାନାପୁରୀ ଅଫିସରଙ୍କ ରାଏ କାଏମ ରହିବ ଓ ମିଆଦ ଗତେ କୌଣସି ପ୍ରକାର ଆପତ୍ତି ଶୁଣାଯିବ ନାହିଁ । ପ୍ରକାଶ ଥାଉକି ଅଟେଷ୍ଟେସନ କିମ୍ବା ଧା ୧୧୬ ର ଅଫିସରଙ୍କର ବାଉଣ୍ଡ୍ରୀ ଡିସ୍ପୁଟ ସମ୍ବନ୍ଧୀୟ କୌଣସି ଆପତ୍ତି ଶୁଣିବାର କ୍ଷମତା ନାହିଁ । କଲିମାହାଲ ମୌଜାମାନଙ୍କରେ ଅର୍ଥାତ୍ ଯେଉଁଠାରେ ଏଥିପୂର୍ବେ ବନ୍ଦୋବସ୍ତ ଓ ନକ୍ସା ପ୍ରସ୍ତୁତ ହୋଇଅଛି, ସେଠାରେ ସବୁ ବାଉଣ୍ଡ୍ରୀ କାଏମ ବୋଲି ଧରାଯିବ । ତାହା କୌଣସି ମତେ ପରିବର୍ତ୍ତନ କରାଯାଇ ନପାରେ । ଏହି ମୌଜାମାନଙ୍କରେ ବାଉଣ୍ଡ୍ରୀ ଡିସ୍ପୁଟ ଗ୍ରହଣ କରାଯିବ ନାହିଁ । ଯଦି ନକ୍ସାରେ ବାଉଣ୍ଡ୍ରୀ ମେଳ ସମ୍ବନ୍ଧେ କୌଣସି ଭୁଲ ଦେଖାଯାଏ ଯଥା—ଏକ ପ୍ଲଟ ଯଦି ଦୁଇ ନକ୍ସାରେ ଅଙ୍କିତ ଥାଏ, କିମ୍ବା କେତେକ ଜମି ଯଦି କୌଣସି ନକ୍ସାରେ ଅଙ୍କିତ ନଥାଏ, ତାହାହେଲେ ଯେ ଅଫିସର ସେ ଭୁଲ ପାଇବେ ସେ ଦଖଲ ସମ୍ବନ୍ଧରେ ପ୍ରମାଣାଦି ନେଇ ଉପରସ୍ଥ ହାକିମଙ୍କ ହୁକୁମାନୁସାରେ ନକ୍ସା ବାଉଣ୍ଡ୍ରୀ ଦୋରସ୍ତ କରିପାରିବେ ।

## (ଖ) ବାଉଣ୍ଡ୍ରୀ ପିଲାର ଅର୍ଥାତ୍ ତ୍ରିସୀମାଳି ପଥର

ତିନିଗୋଟି ମୌଜାର ତ୍ରିସୀମାନାରେ ସେଟଲମେଣ୍ଟ ଡିପାର୍ଟମେଣ୍ଟ ଗୋଟିଏ ଲେଖାଏ ପଥର ଗାଡି ଦେଇ ଯିବେ । ଏହି ପଥର ରକ୍ଷଣର ଭାର କଲେକ୍ଟରଙ୍କ ଉପରେ । ଜମିଦାର ଓ ଏହି ପଥରର ଚାରିପାଖରେ ଥିବା ରୟତମାନେ ଏହି ପଥର ରକ୍ଷଣ ନିମନ୍ତେ ଦାୟୀ ରହିବେ । ଏବିଷୟରେ ଅବହେଳା କଲେ ସେମାନଙ୍କୁ ଫୌଜଦାରୀ ସୁପର୍ଦ୍ଦ କରାଯାଇ ପାରିବ । ସର୍ଭେ ଆକ୍ଟ ଅନୁସାରେ ସୀମା ନିର୍ଦ୍ଦେଶକ ପଥର ସ୍ଥାନାନ୍ତରିତ କଲେ, କିମ୍ବା ନଷ୍ଟ କଲେ, କିମ୍ବା ଉଠାଇ ପକାଇ ଦେଲେ ଅପରାଧୀକୁ ଟ ୨୦୦ ଙ୍କା ପର୍ଯ୍ୟନ୍ତ ଅର୍ଥଦଣ୍ଡ ହେବ ଓ କଲେକ୍ଟରଙ୍କୁ ଖବର ଦେଇ ଯେଉଁ ବ୍ୟକ୍ତି ଅପରାଧୀକୁ ଧରାଇ ଦଣ୍ଡ ଦିଆଇ ପାରିବ ତାହାକୁ ପୁରସ୍କାର ମିଳିବ ।

୩ । ଉକ୍ତ ମହାଲ ମୌଜାମାନଙ୍କରେ ଟ୍ରାଭର୍ସ ସର୍ଭେର ପ୍ରୟୋଜନ ନାହିଁ । ସାବିକ ନକ୍ସା ଉପରେ ସଂଶୋଧନ କରି ସର୍ଭେ ଅମିନ ହାଲ ନକ୍ସା ପ୍ରସ୍ତୁତ କରିବ । ଯଦି ସାବିକ ନକ୍ସାରେ ବିଶେଷ ଭୁଲ ଦେଖା ଯିବ, ତାହା ହେଲେ ନୂଆ କରି କାଡ଼େଷ୍ଟ୍ରାଲ ସର୍ଭେ କରାଯିବ ।

୪ । କାଡ଼େଷ୍ଟ୍ରାଲ ଅମିନ ପ୍ରଥମେ ମୌଜାର ବହିଃସୀମା ନକ୍ସାରେ ଅଙ୍କନ କରି ସାରିବା ପରେ ପ୍ରତ୍ୟେକ ରଯ୍ୟତ ଦଖଲରେ ଥିବା ଲଗାଲଗି ଜମିମାନ ଏକପ୍ଲଟ ଭୁକ୍ତ କରିବ । କିନ୍ତୁ ମାଲିକ ପୃଥକ ଥିଲେ ବା ଜମାବନ୍ଦି ପୃଥକ ଥିଲେ ବା ସତ୍ତ୍ୱ ପୃଥକ ଥିଲେ, କିମ୍ବା ଜମିର କିସମ ପୃଥକ ଥିଲେ, ଏକ ରଯ୍ୟତର ଜମିମାନ ଲଗାଲଗି ହୋଇଥିଲେ ସୁଦ୍ଧା ପୃଥକ ପୃଥକ ପ୍ଲଟ କରାଯିବ । ଯଥା—ବାଯ୍ୟାପ୍ତି ଜମି, ସାଧାରଣ ସ୍ଥିତିବାନ ସତ୍ତ୍ୱର ଜମି ସହିତ ମିଶି ଏକ ହୋଇ ନପାରେ । ତାହେଲ ବାବତ ଜମି ମହାଲ ବାବତ ଜମି ଏକ ରଯ୍ୟତର ଦଖଲରେ ଲଗାଲଗି ହୋଇଥିଲେ ସୁଦ୍ଧା ତାହା ଏକପ୍ଲଟ ଭୁକ୍ତ ହେବ ନାହିଁ । ଅନାବାଦି ଜମି ସଙ୍ଗେ ମଧ ଏକପ୍ଲଟ ହେବନାହିଁ ।

୫ । ହାଲ ବନ୍ଦୋବସ୍ତରେ ପ୍ଲଟମାନଙ୍କରେ ନୂଆ ନମ୍ବର ଦିଆଯିବ ଓ ନୂଆ ଖସଡ଼ା ଓ ଖତିଆନ ମଧ୍ୟ ପ୍ରସ୍ତୁତ ହେବ । ସର୍ଭେ ଓ ଖାନାପୁରୀ ସମୟେ ସମସ୍ତଙ୍କୁ ଉପସ୍ଥିତ ହେବାନିମନ୍ତେ ସାଧାରଣ ନୋଟିସ ଜାରିକରା-ଯାଏ । ଜମିଦାର ଓ ରଯ୍ୟତ ମାନଙ୍କର ଏହି ସମୟରେ ଉପସ୍ଥିତ ହୋଇ ଅମିନଙ୍କୁ ନିଜ ନିଜ ଜମି ଦେଖାଇ ଦେବା କର୍ତ୍ତବ୍ୟ । ଅମିନମାନଙ୍କୁ ଏହିପରି ଉପଦେଶ ଦିଆଯାଇ ଥାଏ ଯେ ଯଦି ପ୍ରଜାମାନେ ବା ଜମିଦାରମାନେ ଗରହାଜର ହୁଅନ୍ତି ତାହାହେଲେ ସେ ସମ୍ବନ୍ଧେ ଉପରସ୍ଥ କର୍ମଚାରୀଙ୍କୁ ରିପୋର୍ଟ ଦେଇ ଯେତେ ଜଣ ହାଜର ଥିବେ ତାହାଙ୍କ ମୁକାବିଲାରେ ଅଗ୍ରଣୀ କାର୍ଯ୍ୟ କରିଯିବେ । କୌଣସି ଲୋକ ଗରହାଜର ହେଲେ ତାହା ଙ୍କରେ ଦୁଇରକମ କ୍ଷତି ହୋଇପାରେ । ତାହାନାମରେ ଅନୁପସ୍ଥିତ ହେମନ୍ତେ

ପ୍ରୋସିଡିଂ କରାଯାଇ ପାରେ; ଅଉମଧ୍ୟ ସେ ଅନୁପସ୍ଥିତ ଥିବାରୁ ତାହା ଜମିର ରେକର୍ଡ ଭୁଲ ହୋଇ ଯାଇପାରେ । ଆବଶ୍ୟକ ହେଲେ ଖାନାପୁରୀ ହାକିମଙ୍କର ହୁକୁମ ଅନୁସାରେ କାମ ନ ସରିବା ପର୍ଯ୍ୟନ୍ତ ଅମିନଙ୍କୁ ପ୍ରତ୍ୟହ ପ୍ରୟୋଜନାନୁସାରେ କୁଲି ଯୋଗାଇବାକୁ ହେବ ।

୨ । ହାଲ ବନ୍ଦୋବସ୍ତରେ ତିନପ୍ରକାର ଖେଓ୍ୱାଟ ପ୍ରସ୍ତୁତ କରାଯାଉ ଅଛି ।

ଯଥା— ୧ମ ଭାଗ ଜମିଦାର ଖେଓ୍ୱାଟ,
୨ୟ ଭାଗ ବାହେଲ ଖେଓ୍ୱାଟ,
୩ୟ ଭାଗ ମଧ୍ୟସତ୍ୱାଧିକାରୀ ଖେଓ୍ୱାଟ;

ଖାନାପୁରୀ ଆରମ୍ଭ ହେବା ପୂର୍ବରୁ ଇନ୍ସପେକ୍ଟର ଖେଓ୍ୱାଟ ପ୍ରସ୍ତୁତ କରିବ ଓ ଜମିଦାର ବା ତାଙ୍କର ଗୁମାସ୍ତାମାନେ ଉପସ୍ଥିତ ରହି ଖେଓ୍ୱାଟ ଠିକମତେ ପ୍ରସ୍ତୁତ ହୋଇଥିବାର ପ୍ରମାଣ ସ୍ୱରୂପ ଦସ୍ତଖତ କରିଦେବେ ।

୭ । **ଖାନାପୁରୀ**—ଅମିନର ପ୍ରତ୍ୟେକ ପ୍ଲଟ ଉପରକୁ ଯାଇ ତାହା ଭୋଗରତ ପ୍ରଜାମାନଙ୍କର ଉକ୍ତି ମତେ ସେମାନଙ୍କ ନାମେ ଖସଡ଼ା ଖତିୟାନ କରିବା କର୍ତ୍ତବ୍ୟ । ଯଦି କୌଣସି ପ୍ଲଟ ସମ୍ବନ୍ଧେ ବିବାଦ ହୁଏ ତାହାହେଲେ ସେହି ବିବାଦ ଉତ୍ତର ନଥିରେ ଚଢ଼ାଇବେ । ମିଆଦଦାସ୍ତରେ ଉତ୍ତର ଚଢ଼ାଯିବ ନାହିଁ । ପକ୍ଷମାନଙ୍କର ଦେଖିବା ଉଚିତ ଯେ ତାଙ୍କର ଉତ୍ତର ଠିକମତ ଦରଜ କରାହୋଇ ଅଛି । ଉତ୍ତର ଦରଜ ହେଲେ ଖାନାପୁରୀ ଅଫିସରଙ୍କ ନିକଟରେ ନିମନ୍ତେ ହାଜର ହେବାକୁ ହେବ । ସବୁଜମିନ ଉପରେ ବିବାଦ ଥିବା ବିଷୟ କହିବାମାତ୍ରେ ଅମିନ ତାହା ଉତ୍ତର ଲିଷ୍ଟରେ ଲେଖିବାକୁ ବାଧ୍ୟ । ଖାନାପୁରୀ ଅମିନ ଯଦି ଅଳଙ୍କାର କିଛି ଭିନ୍ନ ତାହାହେଲେ ଅପେକ୍ଷା ନ କରି ସେ ବିଷୟ ଖାନାପୁରୀ ଅଫିସରଙ୍କ ନଜରକୁ ଆଣିଲେ ତାହାର ପ୍ରତିକାର ହୋଇପାରିବ । ଅମିନ ମୌଜାର କାମ ଶେଷ କରି ମୌଜାରୁ

ଯିବା ପୂର୍ବରୁ ତାହା ବିରୁଦ୍ଧରେ ଯାହାର ଯାହା ଆପତ୍ତି ଥିବ ତାହା ଅଫିସରଙ୍କୁ ଜଣାଇଲେ ତାହାର ପ୍ରତିକାର କରାଯିବ । ସାଧାରଣତଃ ଦେଖାଯାଏ ଆମିନ ମୌଜାର କାମ ସାରି ବାହାରି ଆସିବା ଉତ୍ତାରୁ ତାହାମାନେ ଅନେକ ଆପତ୍ତି ଦରଖାସ୍ତ ଦେଇଥାନ୍ତି । ମାତ୍ର ସେତେବେଳେ ତାହାର କୌଣସି ପ୍ରତିକାର କରା ସମ୍ଭବପର ନୁହେଁ । ହାଲବନ୍ଦୋବସ୍ତରେ ଦେଖାଯାଇ ଅଛି ଯେ ଲୋକମାନଙ୍କର ବେନାମି ଦରଖାସ୍ତ ଦେବା ପ୍ରବୃତ୍ତି ଅପେକ୍ଷାକୃତ ବେଶି । ଏ ସମସ୍ତ ଦରଖାସ୍ତ ଉପରେ ତଦନ୍ତ କରିବାରେ ଦେଖାଯାଇଅଛି ଯେ ଫଳରେ କେବଳ ତଦନ୍ତକାରୀ ଅଫିସରମାନଙ୍କର ସମୟ ଓ ପରିଶ୍ରମ ନଷ୍ଟ । କାରଣ ସରଜମିନ ଉପରେ କୌଣସି ଲୋକ ଆମିନ ଓ ଇନ୍‌ସ୍ପେକ୍ଟର ବିରୁଦ୍ଧରେ କୌଣସି ବିଶେଷ ଅଭିଯୋଗ ସହ ଉପସ୍ଥିତ ହୁଅନ୍ତି ନାହିଁ । ଏଣୁ ବେନାମି ଦରଖାସ୍ତ ଉପରେ କୌଣସି ପ୍ରକାର ତଦନ୍ତ କରାଯିବ ନାହିଁ ।

୮ । ମୌଜା ଖାନାପୁରୀ ସରିଲା ଉତ୍ତାରୁ ଯେଉଁମାନେ ନୂଆ ନକ୍ସାର ନକଲ ଚାହାନ୍ତି ସେମାନେ ଖାନାପୁରୀ ବାଦେ ଏକମାସ ମଧ୍ୟରେ "ଆ, ସେ, ଅଫିସର, କ୍ୟାଡ଼େଷ୍ଟ୍ରାଲ, କଟକ" ଏହି ଠିକଣାରେ ଦରଖାସ୍ତ ପଠାଇବେ । ଏହିପରି ଦରଖାସ୍ତ ଜୁନ ମାସ ୧୫ ତାରିଖ ମଧ୍ୟରେ ଦେବାକୁ ହେବ । ଜୁଲାଇ ମାସ ୩୧ ତାରିଖ ମଧ୍ୟରେ ସମସ୍ତ ଖର୍ଚ୍ଚ ଦାଖଲ ନ କଲେ ଏହିପରି ଦରଖାସ୍ତ ଖାରଜ କରି ଦିଆଯିବ । ବର୍ତ୍ତମାନ ନିମ୍ନଲିଖିତମତେ ନକଲ ଆଣାଇବାର ଖରଚା ନିର୍ଦ୍ଧାରିତ ହୋଇଅଛି ।

୧ । ଫଟୋ ନକ୍ସା ପ୍ରତ୍ୟେକ କପି ଟ ୧ ।

୨ । ଖେଓ୍ୱାଟ ପ୍ରତ୍ୟେକ ପାଞ୍ଚ ଅଂଶ କିମ୍ବା ତହିଁରୁ ନ୍ୟୂନ ଟ ୦।୵

୩ । ଖତିଆନ ପ୍ରତ୍ୟେକ ୧୦୦ ନମ୍ବର କିମ୍ବା ତହିଁରୁ ନ୍ୟୂନ ଟ ୦ ୴୲

୪ । ଖସଡ଼ା ପ୍ରତ୍ୟେକ ନ୧୦୦ମ୍ବର କିମ୍ବା ତହିଁରୁ ନ୍ୟୂନ ଟ୦।୵

୫ । ବିବାଦଫର୍ଦ୍ଦ ପ୍ରତ୍ୟେକ ୫ ନମ୍ବର କିମ୍ବା ତହିଁରୁ ନ୍ୟୂନ ଟ୦।୵

୬ । ଦରଖାସ୍ତ ଫିସ ଟ୦୵ (ଦୁଇଅଣା) ପ୍ରତ୍ୟେକ ଦରଖାସ୍ତ ଉପରେ କୋର୍ଟଫିସ ମରାଇ ଦେବାକୁ ହେବ ।

ଯେଉଁ ଦରଖାସ୍ତକାରୀ ଡାକଦ୍ୱାରା ନକଲ ଚାହିଁବେ ସେମାନଙ୍କୁ ପ୍ରତି ଟଙ୍କାରେ ତିନିଅଣା ଅଧିକ ଦେବାକୁ ହେବ । ହିସାବ ମୋଟ ଉପରେ ଯାହା ଅଫିସରୁ ଧାର୍ଯ୍ୟ ହେବ ତାହା ଦେବାକୁ ହେବ । ଉପରେ ଯେଉଁ ସମସ୍ତ ଖର୍ଚ୍ଚ ତାଲିକା ଦିଆଗଲା ତାହା ପରିବର୍ତ୍ତିତ ହୋଇପାରେ । ଖାନାପୁରୀ ସରିଲା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କୁ ନୋଟିସ ଦ୍ୱାରା ଅବଗତ କରାଇଦିଆଯାଏ ଯେ ଖାନାପୁରୀ ରେକର୍ଡ଼ର ନକଲମାନ ଦରଖାସ୍ତକାରୀଙ୍କୁ ଦିଆଯାଇ ପାରିବ । ଏହି ନୋଟିସରେ ଦରଖାସ୍ତ ଓ ଖରଚ୍ଚ ଦାଖଲ କରିବା ମିଆଦ ଓ ଏକଗୋଟି ଖରଚର ତାଲିକା ମଧ୍ୟ ଦିଆ ଯାଇଥାଏ । ତାହା ସାଧାରଣତଃ ଉପରଲିଖିତ ମତେ ନିର୍ଦ୍ଧାରିତ ହୋଇଥାଏ । ତେବେ ସ୍ଥଳ ବିଶେଷରେ ସାମାନ୍ୟ ପାର୍ଥକ୍ୟ ହୋଇପାରେ । ଏଣୁ ଖାନାପୁରୀ ଅମିନ ଠାରୁ ଏହି ନୋଟିସ ନେଇ ଦେଖିନେବା ଭଲ ।



# ତୃତୀୟ ଭାଗ

## ଆଟେଷ୍ଟେସନ, ଡ୍ରାଫଟ୍ ପବ୍ଲିକେସନ ଓ ଧା୧୧୨ରା ଆପତ୍ତି

୧। ଖାନାପୁରୀ ସରିଲା ବାଦ ଅଟେଷ୍ଟେସନ ଆରମ୍ଭ ହୁଏ। ଅଟେଷ୍ଟେସନର ଅନ୍ତତଃ ୧୦ ଦିନ ପୂର୍ବରୁ କେଉଁ ଜମିର କେତେ ରକବା ତାହା ଲିଷ୍ଟଭୁକ୍ତ ହୋଇ ସେହି ଲିଷ୍ଟ ପ୍ରଜା ଓ ମାଲିକମାନଙ୍କୁ ବିତରଣ କରାଯିବ। ଏହି ରକବା ଲିଷ୍ଟକୁ ଏରିଆସ୍ଲିପ କୁହାଯାଏ। ଏରିଆସ୍ଲିପ-ମାନ ଦେଖି ଆଗାମୀ ଅଟେଷ୍ଟେସନ କାର୍ଯ୍ୟ ସକାଶେ ସମସ୍ତେ ପ୍ରସ୍ତୁତହୋଇ ପାରିବେ। ମାଲିକମାନେ ଏକପଦାଅ ନଦେଲେ ସେମାନଙ୍କୁ ଏରିଆସ୍ଲିପ ଦିଆଯିବନାହିଁ। ବଡ଼ ଜମିଦାରମାନେ କାଡେଷ୍ଟ୍ରାଲ ଅଫିସରେ ଜମାବନ୍ଦି ଦାଖଲ କଲେ ସେମାନଙ୍କର ଏରିଆସ୍ଲିପ କାଡ଼େଷ୍ଟ୍ରାଲ ଅଫିସରୁ ଦିଆଯାଇ ପାରିବ। ଏଥିପାଇଁ ଅବଶ୍ୟ ସେଟଲମେଣ୍ଟ ଅଫିସରଙ୍କ ମଞ୍ଜୁରି ଆବଶ୍ୟକ। ଅଟେଷ୍ଟେସନ କ୍ୟାମ୍ପମାନଙ୍କୁ ରେକର୍ଡ ସମସ୍ତ ବାହାରି ଆସିବା ପୂର୍ବରୁ କାଡ଼େଷ୍ଟ୍ରାଲ ଅଫିସରେ ଏକପଦଦିଆ ଦାଖଲକରି ଏରିଆସ୍ଲିପ ପାଇବା ନିମନ୍ତେ ଦରଖାସ୍ତ ଦେବାକୁ ହେବ।

୨। ଅଟେଷ୍ଟେସନର ପ୍ରଧାନ ଅଙ୍ଗ ବୁଝାରତ। ବୁଝାରତ ସମୟରେ ମୋହରରମାନେ ଖାନାପୁରୀ ରେକର୍ଡ଼ ପଢ଼ି ଶୁଣାଇ ଦେବେ। ଯଦି ଜଣକର ଜମି ଖାନାପୁରୀରେ ଭୁଲବଶତଃ ଅନ୍ୟ କୌଣସି ଲୋକ ନାମରେ ହୋଇ ଯାଇଥାଏ ଏବଂ ଯାହା ନାମରେ ହୋଇଥାଏ ସେ ଯଦି

ସ୍ୱୀକାର କରେ ତାହାହେଲେ ମୁନସରିମାନେ ମିଷ୍ଟେକ୍ ଲେଖି ଉଭୟ ପକ୍ଷଙ୍କ ଦସ୍ତଖତ ନେବେ । ଅଟେଷ୍ଟେସନ ଅଫିସର ସେହି ମିଷ୍ଟେକ ବା ଭୁଲ ସଂଶୋଧନ ନିମନ୍ତେ ଯଥାଯଥ ହୁକୁମ ଦେବେ । ଏହା ମନେରଖିବାକୁ ହେବ ଯେ ଅଟେଷ୍ଟେସନ ଅଫିସରଙ୍କ ଲିଖିତ ହୁକୁମ ନଥିଲେ ଖାନାପୁରୀ ରେକର୍ଡ଼ରେ କୌଣସି ପରିବର୍ତ୍ତନ କରାଯିବ ନାହିଁ ।

୩ । ଖାନାପୁରୀ ରେକର୍ଡରେ ସାଧାରଣତଃ ନିମ୍ନଲିଖିତ ପ୍ରକାର ମିଷ୍ଟେକମାନ ଦେଖାଯାଏ; ଯଥା—

(କ) ଜଣଙ୍କର ଜମି ଆଉ ଜଣଙ୍କ ନାମେ ହୋଇଥିବା ;

(ଖ) ଜଣଙ୍କର ଏକ ସତ୍ତ୍ୱଭୁକ୍ତ ଜମି ତାହାର ନାମରେ ଥିବା ଅପର ସତ୍ତ୍ୱଭୁକ୍ତ ଜମି ସହିତ ଦରଜ ହୋଇଯାଇ ଥିବା ;

(ଗ) କାହାର ଏକ ମାଲିକ ଅଧୀନସ୍ଥ ଜମି ଅପର ମାଲିକ ଅଧୀନରେ ଦରଜ ହୋଇଥିବା ;

(ଘ) ସର୍ଭେ ଭୁଲ ;

(ଙ) ଅଂଶୀଦାରମାନଙ୍କ ନାମ, ପିତାର ନାମ, ଜାତି ଓ ବାସସ୍ଥାନ ଲେଖିବାରେ ଭୁଲ ;

(ଚ) ରେକର୍ଡରେ ମୃତ ବ୍ୟକ୍ତିର ନାମ ;

(ଛ) ଜମିଦାର ମାଲିକର ବିନାନୁମତିରେ ମୃତ୍ତର ନାମେ ଖାତା ହୋଇଥିବା ;

(ଜ) ମାଲିକର ବିନାନୁମତିରେ ଏକ ଯୋତର ଜମି ପୃଥକ ପୃଥକ ଯୋତରେ ଖାନାପୁରୀ ହୋଇଥିବା ;

(ଝ) ଦଖଲର୍ଯୋଗୀ ଖାତାର ମିଷ୍ଟେକ ;

(ଅର୍ଥାତ୍ ମାଲିକର ଅନୁମତି ନ ଥାଇ ଯଦି ଏକ ଯୋତଭୁକ୍ତ ପୃଥକ ପୃଥକ ଅଂଶୀଦାରମାନେ ସେହି ଯୋତଭୁକ୍ତ ଜମିକୁ ଆପଣା ଭିତରେ ବାଣ୍ଟି ନେଇ ପୃଥକ ପୃଥକ ଦଖଲକାର ଥାନ୍ତି ତାହାହେଲେ ଖାନାପୁରୀ

ସମସୂତ୍ରେ ସମସ୍ତ ଅଂଶୀଦାରମାନଙ୍କ ନାମରେ ଏକ ଯୋତର ସମସ୍ତ ଜମି ଏକ ଖାତା ଭୁକ୍ତ ହୋଇ ଭିନ୍ନ ଭିନ୍ନ ପ୍ଲଟ ମନ୍ତବ୍ୟରେ ଭିନ୍ନ ଭିନ୍ନ ଅଂଶୀଦାରର ଦଖଲ ନୋଟ କରାଯାଏ । ଏହାକୁ ଦଖଲଓ୍ୱାରୀ ଖାତା କହନ୍ତି । ଦଖଲଓ୍ୱାରୀ ଖାତାର ସମସ୍ତ ପ୍ଲଟରେ ଅଂଶୀଦାରମାନଙ୍କ ମଧ୍ୟରୁ କାହାର ନା କାହାର ଦଖଲ ନୋଟ ଅବଶ୍ୟ ହେବ । ଯଦି କୌଣସି ଜମି ସମସ୍ତଙ୍କର ଇଜମାଲି ଦଖଲରେ ଥାଏ ସେହି ଜମି ମନ୍ତବ୍ୟରେ ଦଖଲ ଇଜମାଲି ନୋଟ ହେବ । ଖାତା ଭୁକ୍ତ ଜମି ମଧ୍ୟରୁ କୌଣସି ନା କୌଣସି ପ୍ଲଟରେ ସେହି ଯୋତର ରଯ୍ୟତମାନଙ୍କର ଅର୍ଥାତ୍ ସ୍ୱତ୍ୱଖାନା ଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରୁ ପ୍ରତ୍ୟେକର ଦଖଲ ନୋଟ ଥିବା ଅବଶ୍ୟକ) ।

୪ । ଯେଉଁ ସମସ୍ତ ଯୋତର ବିକ୍ରୟରେ ଜମିଦାର ମଞ୍ଜୁର ଆବଶ୍ୟକ ସେହି ଯୋତର ଜମି ଯଦି ଜମିଦାରର ବିନାନୁମତିରେ ହସ୍ତାନ୍ତର ହୋଇଥାଏ ପୂର୍ଣ୍ଣ ଯୋତ ହେଲେ ସ୍ୱତ୍ୱଖାନାରେ ମୁସ୍ତଗୀର ଖରିଦ କିମ୍ବା ଦାନ ସୂତ୍ରେ ଦଖଲ ନୋଟ ହୋଇ କବଲା ତାରିଖ ଯରସମନ ଟଙ୍କା ଦରଜ କରାଯିବ । ଖଣ୍ଡଯୋତ ହେଲେ ସ୍ୱତ୍ୱଖାନାରେ ଏହା ନୋଟ ନ ହୋଇ ଯେଉଁ ପ୍ଲଟ ଖରିଦ ହୋଇଥିବ ତାହାର ମନ୍ତବ୍ୟରେ ଯେପରି ସ୍ୱତ୍ୱଖାନାରେ ହୁଏ ସେହିପରି ମୁସ୍ତଗୀର ଦଖଲ ଓ କବଲାର ବିବରଣ ଲେଖାଯିବ ।

ମୁସ୍ତଗୀର ପିତାର ନାମ, ଜାତି, ବାସସ୍ଥାନ ସବୁ ଲେଖାଯିବ । ଦଖଲଓ୍ୱାରୀ ଖାତାରେ ଖଣ୍ଡଯୋତ ଖରିଦ ହୋଇଥିଲେ ଖରିଦ ହୋଇଥିବା ପ୍ଲଟ ମନ୍ତବ୍ୟରେ ସ୍ୱତ୍ୱଖାନା ଲିଖିତ ରଯ୍ୟତମାନଙ୍କ ମଧ୍ୟରୁ ଯାହା ତରଫରୁ ଖରିଦ ହୋଇଥିବ ତାହାର ଦଖଲ ନୋଟ କରି ତାହା ତରଫରୁ ଖରିଦ ବା ଦାନସୂତ୍ରେ ଦଖଲ ମୁସ୍ତଗୀର ନାମ, ପିତାର ନାମ, ଜାତି ଓ ବାସସ୍ଥାନ ଲେଖିବାକୁ ହେବ । ଯେଉଁ ସମସ୍ତ ହସ୍ତାନ୍ତରରେ ଜମିଦାରର ମଞ୍ଜୁର ଅନାବଶ୍ୟକ ସେ ସ୍ଥଳେ କି ରୂପେ ରେକର୍ଡ଼ ପ୍ରସ୍ତୁତ ହେବ ତାହା ପୂର୍ବରେ କୁହାଯାଇ ଅଛି । (ଦେଖ ପୃଷ୍ଠା ୧୧) । ସାଧାରଣତଃ ଖାନାପୁରୀ

ରେକର୍ଡରେ ଯେଉଁ ସମସ୍ତ ଭୁଲ ବହୁଳ ପରିମାଣରେ ଦେଖାଯାଏ ଯେ ସମସ୍ତର ବିବରଣ ଉପରେ କୁହାଗଲା । ଏହା ଛଡ଼ା ରେକର୍ଡରେ ଅନ୍ୟର ଅନେକ ପ୍ରକାରର ଭୁଲ ମଧ୍ୟ ହୋଇପାରେ । ଏହି ସମସ୍ତ ଭୁଲ ସଂଶୋଧନ ନିମନ୍ତେ ବୁଝାରତ ସମୟରେ ମୁନସରିମ୍‌ମାନେ ମିସ୍କେସ ଲେଖିବେ ।

୫ । ମୁନସରିମ୍‌ମାନେ କେବଳ ସେ ସ୍ଥଳରେ ମିସ୍କେସ ଲେଖିବେ ଯେ ସ୍ଥଳରେ କାହାର କୌଣସି ଆପତ୍ତି ନାହିଁ । ଖାନାପୁରୀ ରେକର୍ଡରେ ଦରଜ ହୋଇଥିବା କୌଣସି ବ୍ୟକ୍ତି ଯଦି ଆପଣା ନାମିତ ରେକର୍ଡ ପରିବର୍ତ୍ତନ କରାଇବାକୁ ନାରାଜ ହୁଏ, ତାହାହେଲେ ସେ ସ୍ଥଳେ ମିସ୍କେସ ନ ଲେଖି ଡିସ୍ପ୍ୟୁଟ ଦାଏର କରାଯିବ । ଯେ ବ୍ୟକ୍ତି ରେକର୍ଡ଼ ପରିବର୍ତ୍ତନ କରିବାକୁ ଚାହେଁ ତାହାକୁ ପ୍ରଥମ ପକ୍ଷ ଅର୍ଥାତ୍ ବାଦୀ ଓ ଯେ ବ୍ୟକ୍ତି ନାମ-ର ଖାନାପୁରୀ ରେକର୍ଡ଼ ପ୍ରସ୍ତୁତ ହୋଇଥିବ ତାହାକୁ ଦ୍ୱିତୀୟ ପକ୍ଷ ବା ପ୍ରତିବାଦୀ କରିବାକୁ ହେବ ।

୬ । (କ) ଅଟେଷ୍ଟେସନ ସମୟରେ କୌଣସି ଯୋତର ଜମା ନ୍ୟାଯ୍ୟ କି ନା ତାହା ବିଚାର କରନ୍ତୁ ନାହିଁ । ଯେଉଁ ଜମା ପ୍ରକୃତରେ ପ୍ରଜା-ମାନେ ଦେଉଥିବେ ସେହି ଜମା ରେକର୍ଡ କରନ୍ତୁ । ଏ ସମ୍ବନ୍ଧେ କୌଣସି ବିବାଦ ହେଲେ ପ୍ରକୃତ ଜମା ନିର୍ଦ୍ଧାରିତ କରି ତାହା ରେକର୍ଡ଼ କରନ୍ତୁ । ପୂର୍ବରେ କୁହାଯାଇ ଅଛି (ପାରା ୯ ପୃଷ୍ଠା ୧୫) ଯେ ମାଲିକ ପ୍ରଜାଙ୍କର ସମ୍ମତି କ୍ରମେ ବ ୧୫ ବର୍ଷ ଅନ୍ତର ଟଙ୍କା ପ୍ରତି ଟ ୦ ⁄ ହିସାବେ ପ୍ରକାର ଦେୟ ଜମା ବୃଦ୍ଧି କରି ପାରନ୍ତି । ଅଟେଷ୍ଟେସନ ଅଫିସର ଯଦି ଏହି ନିୟମର ବ୍ୟତିକ୍ରମ ଦେଖନ୍ତି ତାହାହେଲେ ସେ ସମସ୍ତ ବୃଦ୍ଧି ଜମା କାଟି ଦେଇ ପାରିବେ । (ଦେଖ ପାରା ୯ [ଗ] ପୃଷ୍ଠା ୧୫) ।

(ଖ) ପ୍ରଜାସତ୍ତ୍ୱ ଆଇନର ଦ ୧୩୭ ଧା ଅନୁସାରେ ଯେଉଁ ଅଫିସର-ମାନଙ୍କୁ କ୍ଷମତା ଦିଆ ଯାଇଥିବ, ସେମାନେ ଏହି ଦଫା ଅନୁସାରେ, ଯଦି ମହାଲ ମୌଜାମାନଙ୍କରେ ଜମା ସମ୍ବନ୍ଧେ ବିବାଦ ନିଷ୍ପତ୍ତି କରିବା ନିମନ୍ତେ

ପ୍ରଜାସତ୍ୱ ଅଇନ ଅନୁସାରେ ବେଅଇନ ବୃଦ୍ଧି ହୋଇଥିଲେ ସୁଦ୍ଧା ସେହି ବୃଦ୍ଧି ଜମାକୁ ନ୍ୟାଯ୍ୟ ବୋଲି ବିବେଚନା କଲେ ତାହା ରେକର୍ଡ କରି ପାରନ୍ତି ।

୭ । ମୌଜାର ରେକର୍ଡ ବୁଝାରତ ହୋଇଗଲେ ଓ ସମସ୍ତ ମିସ୍ଲେକ ଓ ତସ୍‌ଫ୍ୟଟ ଉପରେ ଅଟେଷ୍ଟେସନ ଅଫିସର ହୁକୁମ ଦେଲେ ଓ ସେହି ହୁକୁମ ମୁତାବକ ରେକର୍ଡ ସଂଶୋଧନ ହେଲେ ଅଟେଷ୍ଟେସନ ଅଫିସର ମାଲିକ ଓ ପ୍ରଜାମାନଙ୍କର ମୁକାବିଲାରେ ସେହି ରେକର୍ଡ ତସଦିଗ କରିବେ । ଯଦି କାହାର କିଛି ଆପତ୍ତି ଥାଏ ତାହା ସେହି ସମୟରେ ଦର୍ଶାଇଲେ ତାହା ମଧ୍ୟ ବିଚାର କରିବେ ।

୮ । ଏହି ଅଟେଷ୍ଟେସନ କାର୍ଯ୍ୟରେ ( ଅର୍ଥାତ୍ ବୁଝାରତ, ମିସ୍ଲେକ ତସଫ୍ୟଟ ଫଏସଲ ଓ ତସଦିଗ ସମୟରେ ) ସମସ୍ତଙ୍କର ହାଜର ହେବା ଅତିଶୟ ପ୍ରୟୋଜନ । ହାଜର ନହେଲେ ବନ୍ଦୋବସ୍ତ ନିୟମାନୁସାରେ ଅନୁପସ୍ଥିତ ବ୍ୟକ୍ତିଙ୍କୁ ଟ ୫୦୦ ଙ୍କା ପର୍ଯ୍ୟନ୍ତ ଯୋରିମାନା କରି ପାରିଯାଏ । କେବେ ଅଟେଷ୍ଟେସନ କାର୍ଯ୍ୟ ଆରମ୍ଭ ହେଲା ତାହା ଜାଣିନାହିଁ ବୋଲି ଆପତ୍ତି କଲେ ଶୁଣା ଯାଏନାହିଁ । ଅଟେଷ୍ଟେସନ କାର୍ଯ୍ୟ ଆରମ୍ଭର ପ୍ରାୟ ଦୁଇ ତିନିମାସ ପୂର୍ବରୁ ମୌଜାରେ ମନାଦି ଦ୍ୱାରା ସାଧାରଣ ନୋଟିସ ଦିଆଯାଏ । ପୁଣି ଅନ୍ତର ଥରେ ମଧ ସାଧାରଣ ନୋଟିସ ମୌଜା ଉପରେ ଦିଆଯାଏ । ଯଦି କୌଣସି ଲୋକ ଉପରୋକ୍ତ ସାଧାରଣ ନୋଟିସାନୁସାରେ ହାଜର ନହୁଏ ତାହାହେଲେ ତାହା ନାମେ ନୋଟିସ ପଠାଯାଏ । ସେହି ନୋଟିସର ଖରଚ ଏକଟଙ୍କା ଦୁଇଅଣା ସେହି ଲୋକଠାରୁ ଆଦାୟ ହୁଏ । ଏହା ଜୋରିମାନା ନୁହେଁ ; ଜୋରିମାନା ହେଲେ ଏତେ କମ ହେବନାହିଁ । ଯଦି କୌଣସି ଲୋକ ନୋଟିସ ଅବମାନନା କରିବା ଉଦ୍ଦେଶ୍ୟରେ ଗରହାଜର ହୁଏ କିମ୍ବା ମାଲିକମାନେ ସମୟରେ ଏକପଦିଆ ଜମାବନ୍ଦି ଦାଖଲ ନକରି ଓ ବୁଝାରତ ସମୟରେ ହାଜର ନରହି ଯଦି କାର୍ଯ୍ୟର କ୍ଷତି କରନ୍ତି ତାହାହେଲେ ସେମାନଙ୍କୁ ଉପରୋକ୍ତ ରୂପେ ଟ ୫୦୦ ଙ୍କା

ପର୍ଯ୍ୟନ୍ତ ଜୋଡମାନା କରାଯାଏ । ଏଥିରୁ ଏପରି କଚ୍ଛ ବୁଝିବାକୁ ହେବନାହିଁ ଯେ ସମସ୍ତ ଲୋକଙ୍କୁ ନୋଟିସ ପଠାଇ ଅବଗତ କରାଯିବ । ଗରହାଜର ବ୍ୟକ୍ତିମାନଙ୍କର ରେକର୍ଡ଼ ମୌଜାର ଅପରପ୍ରଜାମାନଙ୍କୁ ପଚାରି ଓ ଜମିଦାର ଏଜେଣ୍ଟଙ୍କ ଦ୍ୱାରା ସଂଶୋଧନ କରି ପାରାଯାଏ । ଏଥିରେ ରେକର୍ଡ ଭୁଲ ହୋଇପାରେ ଏବଂ ଏହି ଭୁଲ ସକାଶେ ଗରହାଜର ପ୍ରଜାହିଁ ଦାୟୀ । ଅନେକ ସମୟରେ ବୁଝାରତ-ମୁନସରମମାନେ ପ୍ରଜାଙ୍କ ଆପତ୍ତି ଅନୁସାରେ ମିଷ୍ଟେକ ବା ଡିସପ୍ୟୁଟ ଦାଏର ନକରି ସେମାନଙ୍କୁ ହଇରାଣ କରିବାର ଆପତ୍ତି ଶୁଣାଯାଏ । ଏପରି ସ୍ଥଳେ ସମସ୍ତଙ୍କୁ ସାବଧାନ କରାଇ ଦିଆ ଯାଉଅଛି ଯେ ଯେଉଁ ଖାତା ଉପରେ ମିଷ୍ଟେକ ବା ଡିସପ୍ୟୁଟ ଦାଏର କରିବାକୁ ହେବ ସେହି ଖାତା ବୁଝାରତ ହେଉଥିବା ସମୟରେ ଆପତ୍ତି କଲେ ଯଦି ବା ଯଦି ମୁନସରମ ତାହା ଦାଏର ନକରେ ତାହାହେଲେ ତତ୍‌କ୍ଷଣାତ୍ ତାହା ଅଫିସରଙ୍କ ନଜରକୁ ଆଣିଲେ ସେ ତାହା ଦାଏର କରାଇ ଦେବେ ଓ ମୁନସରମ୍‌ମାନଙ୍କ ଦୋଷ ଦେଖି ସଜା ଦେବେ । ବୁଝାରତ ଚାଲୁଥିବା ସମୟେ ଖାତା ଉପରେ ଯାହା କିଛି ମିଷ୍ଟେକ ବା ଡିସପ୍ୟୁଟ ଥିବ ତାହା ମୁନସରମ୍-ମାନେ ଦାଏର କରିବେ । ଖାତା ଥରେ ବୁଝାରତ ସରିଲେ ହାକିମଙ୍କ ବିନାନୁମତିରେ କୌଣସି ଖାତା ଉପରେ ମିଷ୍ଟେକ ବା ଡିସପ୍ୟୁଟ ଦାଏର ହେବନାହିଁ । **ମିଷ୍ଟେକ ବା ଡିସପ୍ୟୁଟ ଦାଏର କରିବାକୁ କୌଣସି ଫିସ ଲାଗେନାହିଁ ।**

୯ । ଅଟେଷ୍ଟେସନ କାର୍ଯ୍ୟ ସରିଲା ଉତ୍ତାରୁ ନୋଟିସ ଦ୍ୱାରା ଦିନ ଧାର୍ଯ୍ୟ କରାଯାଇ ରେକର୍ଡମାନ ଡ୍ରାଫ୍ଟ ପବ୍‌ଲିକେସନ ଅର୍ଥାତ୍ ପଢି ଶୁଣାଇ ଦିଆଯାଏ । ଡ୍ରାଫ୍ଟ ପବ୍ଲିକେସନ ହେଲା ବାଦେ ଏକ ମାସ ପର୍ଯ୍ୟନ୍ତ ସମସ୍ତେ ତାହା ଦେଖି ପାରନ୍ତି ଓ ନକଲ ମଧ୍ୟ ନେଇ ପାରନ୍ତି; କିନ୍ତୁ କାହାରିକୁ ସ୍ୟାହିରେ ନକଲ ଦିଆଯିବ ନାହିଁ । ପେନସିଲରେ ନେବେ । ଏହି

ନକଲ ନିଜେ କରି ନେବାକୁ ହେବ । କୌଣସି ଅମଲା କରିଦେବେ ନାହିଁ । ଏହା ଯାବଦା ନକଲ ନୁହେ । କିମ୍ବା ଏଥିରେ କୌଣସି ଫିସ ଲାଗେ ନାହିଁ । ଡ୍ରାଫ୍ଟ ପବ୍ଲିକେଶନ ହେବା ପରେ ମଧ୍ୟ ସେହି ରେକର୍ଡରେ ଯଦି କୌଣସି ଭୁଲ ବା କାହାର ଆପତ୍ତି ଥାଏ ତାହାର ସଂଶୋଧନ ବା ପ୍ରତିକାର ନିମନ୍ତେ ପ୍ରଜା ଓ ମାଲିକମାନଙ୍କଠାରୁ ପ୍ରଜାସତ୍ୱ ଆଇନର ୧୧୬ ଧାରା ମୁତାବକ ଆପତ୍ତି ଦରଖାସ୍ତ ଗ୍ରହଣ କରାଯାଏ । ଏକ ମାସ ଅତୀତ ହୋଇଗଲେ, ଆଉ ଏପରି ଆପତ୍ତି ଗ୍ରହଣ କରାଯାଏ ନାହିଁ । ଅଟେଷ୍ଟେସନ କ୍ୟାମ୍ପମାନଙ୍କରେ ମଧ୍ୟ ୧୧୬ ଧାରା ଦରଖାସ୍ତ ଲେଖିବା ନିମନ୍ତେ ଜଣେ ମୋହରିର ନିଯୁକ୍ତ ହୋଇଥାଏ । ଯେଉଁମାନେ ନିଜେ ଦରଖାସ୍ତ ଲେଖିବାକୁ ଅକ୍ଷମ ସେମାନେ ଗ୍ରଅଣା ମୂଲ୍ୟର କୋର୍ଟଫିସ ସହ ଧା ୧୧୬ ର ଦରଖାସ୍ତ ଫର୍ମ ଓ କାଗଜ ଦେଲେ ଏହି ମୋହରିର ସେମାନଙ୍କ ଦରଖାସ୍ତ ଲେଖି ଦେବେ । ଏହା ସହାଶେ କୌଣସି ପ୍ରକାର ନୋଟିସ ଲେଖାଇ, ନମ୍ବର ଦିଆ, ବା ରେକ ଖରଚ ପ୍ରଭୃତି ବାବଦ ଫିସ ଆଦାୟ ହେବନାହିଁ । ପ୍ରତ୍ୟେକ ଧା ୧୧୬ ର ଦରଖାସ୍ତ ସହିତ ତହିଁ ଲିଖିତ ପ୍ରତ୍ୟେକ ପ୍ରତିବାଦୀ ଉପରେ ଜାରି ନିମନ୍ତେ ଦରଖାସ୍ତ ନକଲ ଏକ କତା ଲେଖାଏଁ ଓ ନୋଟିସ ଦୁଇ କତା ଲେଖାଏଁ ଦେବାକୁ ହେବ ।

୧୦ । **ଆପତ୍ତି ଦରଖାସ୍ତରେ କୋର୍ଟଫିସ ଦେବାର ନିୟମ** — ପକ୍କା ମାହାଲ ସଂକ୍ରାନ୍ତ ସମସ୍ତ ପ୍ରକାର ଜମି ସମ୍ବନ୍ଧେ ଏବଂ କଚ୍ଚି ମାହାଲର ଲାଖରାଜ ବାହେଲ ଜମି ସମ୍ବନ୍ଧେ ଓ ଟଙ୍କୀ ବାହେଲ ଜମି ସମ୍ବନ୍ଧେ ଯେଉଁ ସମସ୍ତ ଅପତ୍ତି ଦରଖାସ୍ତ ହେବ ସେଥିର ପ୍ରତ୍ୟେକଙ୍କରେ ଟ୦ ୴ ର କୋର୍ଟଫିସ ଦେବାକୁ ହେବ ।

୧୧ । ସେହି ଆପତ୍ତିମାନ ବିଚାର କରିବାର ଦିନ ଧାର୍ଯ୍ୟ ହେଲେ ପୂର୍ବରୁ ସମସ୍ତପକ୍ଷଙ୍କ ଉପରେ ନୋଟିସଜାରି କରି ତାହା ବିଚାର କରାଯିବ ।

ନୋଟିସ ବିଧିମତ ଜାରି ହୋଇ ବିଚାର ଦିନରେ ଆପତ୍ତିକାରୀ ଅନୁପସ୍ଥିତ ଥିଲେ ସେହି ଆପତ୍ତି ଖାରିଜ କରାଯିବ । ଉଭୟ ପକ୍ଷ ଉପସ୍ଥିତ ଥିଲେ ଆପଣାର ଆପତ୍ତି ଲିଖିତ ସମସ୍ତ ବିଷୟ ପ୍ରମାଣ କରିବାର ଭାର ଆପତ୍ତିକାରୀ ଉପରେ ରହିବ । ସାଧାରଣତଃ ଧାର୍ଯ୍ୟ ଦିବସରେ ଧା ୧୧୬ ର ଆପତ୍ତିମାନ ବିଚାର କରିବାର ନିୟମ; — ବିଶେଷ କାରଣ ଦର୍ଶାଇଲେ ଓ ୫ ୦ ୟ ର କୋର୍ଟଫିସ ସହ ଦରଖାସ୍ତ ଦେଲେ ଅଫିସରଙ୍କ ବିବେଚନାନୁସାରେ ସମୟ ଦେଇ ପାରନ୍ତି ।



# ଚତୁର୍ଥ ଭାଗ

## କଚ୍ଛି ମାହାଲମାନଙ୍କରେ ନ୍ୟାଯ୍ୟ ଜମା ଧାର୍ଯ୍ୟ ଓ ୧୨୩ ଧାରା ଆପତ୍ତି

୧ । (କ) ପୂର୍ବ ଭାଗରେ କୁହା ହୋଇଥିବା ପ୍ରଣାଳୀରେ ସମସ୍ତ ୧୧୬ ଧାରା ଆପତ୍ତିମାନ ବିଚାର ସରିଲେ କଚ୍ଛି ପ୍ରଦେଶର ଲାଖରାଜ ବାହେଲ ଓ ଠିକ୍କି ବାହେଲଭୁକ୍ତ ପ୍ରଜାମାନଙ୍କ ଛଡ଼ା ଅପର ସମସ୍ତ ପ୍ରକାର ପ୍ରଜାଙ୍କର ନ୍ୟାଯ୍ୟ ଜମା ଧାର୍ଯ୍ୟ କରାଯିବ । ଏହି ଜମା ଧାର୍ଯ୍ୟ କରିବାର ଅନ୍ତତଃ ସାତ ଦିନ ପୂର୍ବରୁ ନୋଟିସ ଦିଆଯାଇ ମାଲିକ ଓ ପ୍ରଜାମାନଙ୍କୁ ଜମା ଧାର୍ଯ୍ୟର ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟ ସାଧାରଣ ନୋଟିସ ଦ୍ୱାରା ଜଣାଇ ଦିଆଯିବ । ଏବଂ ସମସ୍ତଙ୍କର ମୁକାବିଲାରେ ନ୍ୟାଯ୍ୟ ଜମା ଧାର୍ଯ୍ୟ କରାଯିବ । ଯଦି କେହି ନୋଟିସ ସତ୍ତ୍ୱେ ଗରହାଜର ହୁଏ ତାହାହେଲେ ତାହାର ଗରହାଜରରେ ଜମା ଧାର୍ଯ୍ୟ ହେବ ।

(ଖ) ମୌଜାର ସମସ୍ତ ପ୍ରଜାଙ୍କର ଜମା ଧାର୍ଯ୍ୟ ହୋଇ ସାରିଲା ବାଦ୍ ଅନ୍ତତଃ ଏକ ସପ୍ତାହର ନୋଟିସ ଦିଆଯାଇ ନୂତନ ରେଣ୍ଟରୋଲ କାଗଜ ଡ୍ରାଫ୍ଟ ପବ୍ଲିକେସନ କରାଯିବ । ଏହି ଦିନଠାରୁ ଏକ ମାସ ପର୍ଯ୍ୟନ୍ତ ସେହି ରେଣ୍ଟରୋଲ କାଗଜମାନ ଜମାବନ୍ଦି କ୍ୟାମ୍ପରେ ସର୍ବସାଧାରଣଙ୍କ ଦେଖିବା ନିମନ୍ତେ ଖୋଲା ରହିବ । ଏହି ସମୟ ମଧ୍ୟରେ ଯାହାର ଯାହା ଆପତ୍ତି ଥିବ ସେ ତାହାର ପ୍ରତିକାର ନିମନ୍ତେ ପ୍ରଜାସତ୍ତ୍ୱ ଆଇନର ୧୨୩ ଧାରାନୁସାରେ ଦରଖାସ୍ତ କରିପାରେ । ଏହି ଦରଖାସ୍ତ ଦାଏର କରିବାର

ନିୟମ ୧୧୬ ଧାରା ଦରଖାସ୍ତ ମୁତାବକ । ଏ ସ୍ଥଳେ ବିଶେଷ ଦ୍ରଷ୍ଟବ୍ୟ ଏହିକି ଯେ ୧୬୩ ଧାରାନୁସାରେ ଯେ କେବଳ ଜମା ସମ୍ବନ୍ଧେ ଆପତ୍ତି କରିବାକୁ ହେବ ତାହା ନୁହେ । ରେକର୍ଡରୋଲରେ ଥିବା ଯେ କୌଣସି ପ୍ରକାର ଭୁଲ ସଂଶୋଧନ ନିମନ୍ତେ ଏହି ଆପତ୍ତି କରି ପାରିଯାଏ ।

୨ । ହାଲ ବନ୍ଦୋବସ୍ତରେ ଦେଖା ଯାଉଅଛି ଯେ ଗତ ପ୍ରୋଭିନ୍ସିଆଲ ବନ୍ଦୋବସ୍ତରେ ଯେଉଁ ସମସ୍ତ ଜମା ଧାର୍ଯ୍ୟ ହୋଇଥିଲା ତାହାହିଁ ଅଦ୍ୟ ସୁଦ୍ଧା ଚାଲି ଆସୁଅଛି । ପ୍ରଜାସତ୍ୱ ଆଇନର ୩୫ (ବ) ଧାରା ଅନୁସାରେ ପ୍ରଜାଙ୍କର ଦେୟ ଜମା ପ୍ରଧାନ ଖାଦ୍ୟ ଶସ୍ୟାଦିର ମୂଲ୍ୟ ବୃଦ୍ଧି ସଙ୍ଗତ ବୃଦ୍ଧି କରି ପାରିଯାଏ । ପ୍ରୋଭିନ୍‌ସିଅଲ ବନ୍ଦୋବସ୍ତ ୩୦ ବର୍ଷ ପୂର୍ବେ ହୋଇଥିଲା । ସେ ସମୟରେ ଖାଦ୍ୟ ଶସ୍ୟମାନଙ୍କର ମୂଲ୍ୟର ଅବସ୍ଥା ଓ ବର୍ତ୍ତମାନ ସମୟର ମୂଲ୍ୟର ଅବସ୍ଥା ଏବଂ ୩୦ ବର୍ଷ ପୂର୍ବର କୃଷି ଖରଚ ଓ ବର୍ତ୍ତମାନ ସମୟର କୃଷି ଖରଚ ଏହି ସମସ୍ତ ବିଷୟ ତୁଳନା କରି ବାଟେଲିଅର କଲରେ ଦେଖା ଯାଇଅଛି ଯେ ପ୍ରୋଭିନ୍‌ସିଆଲ ବନ୍ଦୋବସ୍ତରୁ ଚାଲି ଆସୁଥିବା ଖଜଣା ଉପରେ ଟଙ୍କା ପ୍ରତି ଟ ୦ ୭୬ ଏବଂ ରତିଜନ ବନ୍ଦୋବସ୍ତରୁ ଚାଲି ଆସୁଥିବା ଖଜଣା ଉପରେ ଟଙ୍କା ପ୍ରତି ଟ ୦ ୮/ ୯ ହିସାବେ ଆଇନ ଅନୁସାରେ ବୃଦ୍ଧି କରି ପାରିଯାଏ । କିନ୍ତୁ ପ୍ରଜାଙ୍କର କଷ୍ଟ ନ ହେବା ନିମନ୍ତେ ହାଲ ବନ୍ଦୋବସ୍ତରେ ବାଟେଲିଅରରେ ବୃଦ୍ଧିବହାର କମ୍ କରା ହୋଇଥିଲା ।

୩ । (କ) ହାଲ ବନ୍ଦୋବସ୍ତରେ ଯେଉଁ ସମସ୍ତ ଖଣ୍ଡିସ୍ଥାନରେ ଜମା ଧାର୍ଯ୍ୟ ଯୋଗ୍ୟ ବୋଲି ଲେଖା ଯାଉଅଛି ସେମାନଙ୍କ ଜମା ନୂଆ ଭିଲେଜ (ହାରାହାରି) ରେଟ ଅନୁସାରେ ଧାର୍ଯ୍ୟ କରାଯିବ ।(ଦେଖ ପାରା ୨ ପୃଷ୍ଠା ୪୨)

(ଖ ) ଦଖଲସତ୍ୱଶୂନ୍ୟ ରୟତମାନଙ୍କର ଜମା ବୃଦ୍ଧି କରାଯିବ ନାହିଁ । କିନ୍ତୁ ଯଦି ସେମାନଙ୍କର ଜମା ବିଶେଷ କମ ଦେଖାଯାଏ ତାହା-ହେଲେ ବୃଦ୍ଧି ହେବ ।

(ଗ) ସିକମ ପ୍ରଜାମାନଙ୍କର ଜମା ପ୍ରୋଭିନସିଅଲ କିମ୍ବା ଦେଶଜନ ବନ୍ଦୋବସ୍ତଠାରୁ ଉଚ୍ଚ ନ ଅସୁଥିଲେ ତାହା ବୃଦ୍ଧି କରାଯିବ ନାହିଁ । ଉଚ୍ଚ ଅସୁଥିଲେ ତାହା ସ୍ଥିତିବାନ ପ୍ରଜାଙ୍କ ଭଳିଆ ବୃଦ୍ଧି କରାଯିବ ।

(ଘ) ଭାଗ ବା ସଞ୍ଜା ପ୍ରଭୃତିର କୌଣସି ପରିବର୍ତ୍ତନ କରାଯିବ ନାହିଁ ।

(ଙ) ଚନ୍ଦନାଦାରମାନଙ୍କ ଜମା ସାଧାରଣତଃ ସ୍ଥିତିବାନ ପ୍ରଜାଙ୍କ ହାରରେ ବୃଦ୍ଧି କରାଯିବ । କିନ୍ତୁ ଯଦି ବଡ଼ ବଡ଼ ବଜାରମାନଙ୍କରେ ଖାଦ୍ୟ ଶସ୍ୟର ମୂଲ୍ୟ ବୃଦ୍ଧିର ଅନୁପାତରେ ଘର ଭଡ଼ାର ରେଟ ଅତ୍ୟଧିକ ପରିମାଣରେ ବଢ଼ିଥାଏ ତାହାହେଲେ ଏ ସମସ୍ତ ବିଷୟ ବିବେଚନା କରି ସାବିକ ଜମା ଉପରେ ଟଙ୍କା ପ୍ରତି ଏକ ଟଙ୍କା ପର୍ଯ୍ୟନ୍ତ ବୃଦ୍ଧି କରି ଦିଆଯିବ ।

(ଚ) ବାଯ୍ୟାପ୍ତି ସ୍ଥିତିବାନ୍ ପ୍ରଜାମାନଙ୍କର ସାବିକ ଜମା ଉପରେ ଟଙ୍କା ପ୍ରତି ଟ ୦ ୧ ଅଠଅଣା ବୃଦ୍ଧି କରି କଷୋଟ କରାଯିବ । ମଧ୍ୟ ସେମାନଙ୍କ ଦଖଲରେ ଥିବା ସମ୍ପୂର୍ଣ୍ଣ ରକବାକୁ ମୌଜା ରେଟର ଦୁଇ ତୃତୀୟାଂଶରେ କଷୋଟ କରାଯିବ । ଏ ଦୁଇ ପ୍ରଣାଳୀରେ ହିସାବ କରି ଯେଉଁଟି କମ ହେବ ତାହା ଧାର୍ଯ୍ୟ କରାଯିବ । ବାଯ୍ୟାପ୍ତିଦାରମାନେ କମ ଜମାରେ ଜମି ଭୋଗ କରିବାର କୌଣସି ବିଶେଷ କାରଣ ନ ଥିଲେ ସୁଦ୍ଧା ସେ ବରାବର କମ ଜମା ଦେଇ ଆସୁଅଛନ୍ତି । ଆଇନ ଅନୁସାରେ ସେମାନଙ୍କ ଜମା ସାଧାରଣ ସ୍ଥିତିବାନ ପ୍ରଜାର ଜମାର ସମାନ କରି ପାରାଯାଏ । (୩୬ ଧାରା ପ୍ର, ପ, ଅ, ଦେଖ) । କିନ୍ତୁ ହଠାତ୍ ବୃଦ୍ଧିରେ ସେମାନଙ୍କର ବିଶେଷ କଷ୍ଟ ହୋଇପାରେ ବୋଲି ଭିଲେଜ ରେଟର ଦୁଇ ତୃତୀୟାଂଶରୁ ଅଧିକ ବୃଦ୍ଧି କରାଯାଉ ନାହିଁ । ଏହି ନିୟମ ବାଯ୍ୟାପ୍ତି ନିଷ୍କରାଧିକାରୀ ସମ୍ବନ୍ଧେ ମଧ୍ୟ ପ୍ରୟୋଗ କରା ହୋଇଅଛି ।

୪ । ବାଜ୍ୟାପ୍ତି ମଧ୍ୟରୁ ଥିବା ଓ ଖରିଦା ଜମିବାନ୍ଧ ମଧ୍ୟସ୍ୱତ୍ୱାଧିକାରୀ-ମାନଙ୍କ ଜମା ନିମ୍ନଲିଖିତ ପ୍ରଣାଳୀରେ ଧାର୍ଯ୍ୟ କରାଯିବ ।

(କ) ଏମାନଙ୍କ ଦଖଲରେ ଥିବା ମୋଟ ରକବା ମଧ୍ୟରୁ ଖାତାରେ ଥିବା ଅନାବାଦୀ ରକବା ବାଦ ଦିଆଯିବ । ବାକି ଆବାଦୀ ନିଜ ଦଖଲ ରକବା ଓ ପ୍ରଜା ଦଖଲ ଥିବା ସମସ୍ତ ରକବାକୁ ନୂଆ ଭିଲେଜ ରେଟର ଦୁଇ ତୃତୀୟାଂଶରେ କଷୋଟ କରାଯିବ ।

(ଖ) ସାବିକ ଜମାକୁ ଟଙ୍କା ପ୍ରତି ଟ ୦୳ ବୃଦ୍ଧିରେ କଷୋଟ କରାଯିବ ।

(କ) ର ଫଳ ଯଦି (ଖ) ର ଫଳ ଅପେକ୍ଷା କମ ହୁଏ ତାହାହେଲେ (କ)ର ଫଳ ଧାର୍ଯ୍ୟ କରାଯିବ । (କ)ର ଫଳ ଯଦି (ଖ)ର ଫଳ ଅପେକ୍ଷା ବେଶି ହୁଏ ତାହାହେଲେ ଏତଦୁଭୟର ହାରାହାରି ଜମା ଧାର୍ଯ୍ୟ କରାଯିବ ।

ଦୃଷ୍ଟାନ୍ତ— ରାମ ଜଣେ ମଧ୍ୟସ୍ୱତ୍ୱାଧିକାରୀ । ତାହାର ନିଜ ଦଖଲ ରକବା ମଧ୍ୟରୁ ଏ ୨·୦୦ ଅନାବାଦୀ ଓ ଏ ୩·୦୦ ଆବାଦୀ; ଏବଂ ଭିନ୍ନ ଗୋଟିଏ ପ୍ରଜା ଅଧୀନରେ ଥିବା ମୋଟ ରକବା ଏ୩·୦୦, ଭିଲେଜ ରେଟ ଟ ୩୲, ତାହାର ଦୁଇ ତୃତୀୟାଂଶ ଦୁଇ ଟଙ୍କା । କ' ହିସାବମତେ ଏହି ସମସ୍ତ କଷୋଟର ଫଳ ଅନାବାଦୀ ଏ ୩·୦୦ ବାଦେ ମୋଟ ଏ ୬·୦୦ କୁ ଟ ୧୨ଙ୍କା ହେଉଅଛି । ରାମର ସାବିକ ଜମା ଯଦି ଟ ୯୲ ହୁଏ ଖ' ହିସାବ ମତେ ଟଙ୍କା ପ୍ରତି ଟ ୦୳ ଆଠଅଣା ରେଟରେ ବୃଦ୍ଧି କଲେ ତାହା ଟ ୧୩୳ ତେର ଟଙ୍କା ଆଠ ଅଣା ହେବ । ଏ ସ୍ଥଳେ ଟ ୧୩୳ ଧାର୍ଯ୍ୟ କରା ନ ଯାଇ ଟ ୧୨୲ ଧାର୍ଯ୍ୟ କରାଯିବ । ଯଦି ରାମର ସାବିକ ଜମା ଟ ୬୲ ହୁଏ (ଖ) ହିସାବ ଅନୁସାରେ ବୃଦ୍ଧି ଜମା ଟ ୯୲ ହେବ । ଏ ସ୍ଥଳେ (କ) ହିସାବ ଜମା ଟ ୧୨୲ ଙ୍କା ଥିବାରୁ ଟ ୯୲ ଙ୍କା ଓ ଟ ୧୨୲ ର ହାରାହାରି ଟ ୧୦୳ ଧାର୍ଯ୍ୟ ହେବ ।

* । ବାଯ୍ୟାପ୍ତି ମଧ୍ୟସତ୍ୱାଧିକାରୀ, ସବ୍ ପ୍ରୋପ୍ରାଇଟର, ଓ ଖରିଦାଜମାବନ୍ଦୀ ମଧ୍ୟସତ୍ୱାଧିକାରୀ ଛଡା ଅପର ଯେତେ ପ୍ରକାର ମଧ୍ୟସତ୍ୱାଧିକାରୀ ରହିଲେ ସେମାନଙ୍କ ଜମା ନିମ୍ନଲିଖିତ ପ୍ରଣାଳୀରେ କଷୋଟକର ଧାର୍ଯ୍ୟ ହେବ ।

( କ ) ଏମାନଙ୍କ ଦଖଲ ରକବା ମଧ୍ୟରୁ ଅବାଦୀ ନିଜଦଖଲ ଓ ଓ ନିସ୍ଫର ଏବଂ ଭାଗ ବା ସଞ୍ଜା ଜମାରେ ଥିବା ପ୍ରଜାଦଖଲ ରକବାକୁ ମୋଟ କରିଯାଇ ତାହାର ଜମା ପୁରୁଣା ନୂଆ ଭିଲେଜ ରେଟାନୁସାରେ କଷୋଟ କରିଯିବ । ନଗଦ ଜମାରେ ଥିବା ଏମାନଙ୍କର ଅଧୀନସ୍ଥ ପ୍ରଜା ଦଖଲ ରକବାକୁ ନୂଆ ଭିଲେଜ ରେଟର ତିନ ଚତୁର୍ଥାଂଶରେ କଷୋଟ କରାଯିବ । ଉଭୟଙ୍କର ଫଳକୁ ମୋଟ କରାଯିବ ।

( ଖ ) ରୟତମାନଙ୍କ ଜମା ଟଙ୍କା ପ୍ରତି ଯେଉଁ ହିସାବେ ବୃଦ୍ଧି କରାଯିବ ସେହି ହିସାବରେ ଏମାନଙ୍କର ଦେୟ ସାବକ ଜମା ମଧ୍ୟ ବୃଦ୍ଧି କରି କଷୋଟ କରାଯିବ ।

( କ ) ଓ ( ଖ ) ଉଭୟ ପ୍ରଣାଳୀର କଷୋଟର ଯାହା ମୋଟ ଫଳ ହେବ ତାହାର ହାରାହାରି ଅର୍ଦ୍ଧେକ ଧାର୍ଯ୍ୟ କରାଯିବ ।

ଦୃଷ୍ଟାନ୍ତ—ନୂଆ ଭିଲେଜ ରେଟ ଟ ୪୯ ଙ୍କା, ମଧ୍ୟସତ୍ୱାଧିକାରୀ ଅଧୀନରେ ଅନାବାଦ ନିଜ ଦଖଲ ଏ୩-୦୦, ଅବାଦ ନିଜ ଦଖଲ ଏ୩-୦୦ ଅଛି । ମଧ୍ୟସତ୍ୱାଧିକାରୀ ଅଧୀନସ୍ଥର ପ୍ରଜା ଦଖଲ ରକବା ଏ୯—୦୦, ଏବଂ ଭାଗ ଜମାରେ ଥିବା ପ୍ରଜା ଦଖଲ ରକବା ଏ୬-୦୦, ଏରୂପ ମୋଟ ଏ୯-୦୦ ରୁ ଅନାବାଦ ଏ୩-୦୦ ବାଦ ଦେଇ ଏ୬-୦୦ କୁ ପୁରୁଣା ଭିଲେଜ ରେଟରେ କଷୋଟ କରିବାରେ ଟ ୬୪୯ ଙ୍କା ହେଉ ଅଛି । ନଗଦ ଜମାରେ ପ୍ରଜା ଦଖଲ ରକବା ଏ୩-୦୦ କୁ ଟ ୪୯ ଙ୍କାର ତିନ ଚତୁର୍ଥାଂଶ ତିନିଟଙ୍କାରେ ହିସାବ କରି କଷୋଟ କରିଲେ ଟ ୯୯ ହେଉ ଅଛି । ଟ୬୪ + ଟ ୯୯ଙ୍କା= ଟ୩୩୯, ମଧ୍ୟସତ୍ୱାଧିକାରୀର ସାବକ ଜମା ଟ୬୨୯, ମୌଜାର ସାଧାରଣ ଜମା ବୃଦ୍ଧିର ହାର ଟଙ୍କା ପ୍ରତି ଟ ୦ । ହେଲେ ଟ ୬୦ ଙ୍କା ସ୍ଥଳେ

ଟ ୨୫ ଙ୍କା ହେବ । ଏ ସ୍ଥଳେ ଟ ୨୫୯ ଓ ଟ ୩୩୯ ର ହାରାହାରି ଟ ୨୯୯ ଙ୍କା ଧାର୍ଯ୍ୟ ହେବ।

୭ । ମଧ୍ୟସତ୍ୱାଧିକାରୀ ମାନଙ୍କ ଜମା ବୃଦ୍ଧି ସମ୍ବନ୍ଧେ ଉପରେ ଯାହା କୁହାଗଲା ନିମ୍ନଲିଖିତ ସ୍ଥଳରେ ସେହି ନିୟମର ବ୍ୟତିକ୍ରମ ହେବ ।

(କ) ଉପରୋକ୍ତ ନିୟମାନୁସାରେ ହିସାବ କରି ଯେଉଁ ଜମା ହେବ ତାହା ଅଫିସରଙ୍କ ବିଚାରରେ ନ୍ୟାଯ୍ୟ ଜମା ବୋଲି ବୋଧ ନ ହେଲେ ଅନ୍ୟପ୍ରକାର ଜମା ଧାର୍ଯ୍ୟ କରିବାର ତାଙ୍କର କ୍ଷମତା ଅଛି ।

(ଖ) ଯଦି କୌଣସି ମଧ୍ୟସତ୍ୱାଧିକାରୀ ଅଧୀନସ୍ଥ ସମସ୍ତ ରକବା ନଗଦି ଜମାରେ ପ୍ରଜାମାନଙ୍କ ଦଖଲରେ ଥାଏ ଏବଂ ମଧ୍ୟସତ୍ୱାଧିକାରୀ ଯଦି ଦେଖାଇ ପାରେ ଯେ ଗତ ପ୍ରୋଭିନ୍‌ସିଆଲ ବନ୍ଦୋବସ୍ତ ଠାରୁ ଏହିରୂପେ ଚଳି ଆସୁଅଛି; ତାହାହେଲେ ତାହା ଅଧୀନସ୍ଥ ପ୍ରଜାଙ୍କର ଜମା ଉପରେ ମୋଟ ଯେତେ ଟଙ୍କା ବୃଦ୍ଧି କରାଯିବ ତାହାର ଅଧିକ ମଧ୍ୟସତ୍ୱାଧିକାରୀର ଜମାର ଉପରେ ବୃଦ୍ଧି କରାଯିବ ନାହିଁ ।

୭ । ଉପରେ ଭିଲେଜ ରେଟ ଯାହା କୁହାଗଲା ତାହା ନିମ୍ନଲିଖିତ ମତେ କଷୋଟ କରାଯାଏ ।

ମାହାଲରେ ଜମିଦାରମାନଙ୍କର ଏବଂ ସେମାନଙ୍କ ଅଧୀନସ୍ଥ ମଧ୍ୟସତ୍ୱାଧିକାରୀମାନଙ୍କର ଅଧୀନରେ ଥିବା ସମସ୍ତ ଦଖଲ ସତ୍ୱ ବିଶିଷ୍ଟ ଓ ସ୍ଥିତିବାନ ରୟତମାନଙ୍କର ଦଖଲରେ ଥିବା ରକବାକୁ ମୋଟ କରାଯିବ । ସେମାନଙ୍କ ଦେୟ ମୋଟ ଜମା ଉପରେ ଏହି ମୋଟ ରକବାକୁ କଷୋଟ କରି ଫି ଏକର ପ୍ରତି ଯେତେ ଜମା ପଡ଼ିବ ତାହାହିଁ ମୌଜାର ଭିଲେଜ-ରେଟ । ମୌଜାରେ ପ୍ରଜାଙ୍କର ଦେୟ ଜମା ଟଙ୍କା ପ୍ରତି ଯେତେ ଅଣା ହିସାବେ ବୃଦ୍ଧି କରାଯିବ ତେତେ ଅଣା ହିସାବରେ ଭିଲେଜରେଟକୁ ବୃଦ୍ଧି କଲେ ଯାହାହେବ ତାହାହିଁ ନୂଆ ଭିଲେଜ ରେଟ ।



# ପଞ୍ଚମ ଭାଗ

## ୧୨୮ ଧାରା ମୁତାବକ ଦରଖାସ୍ତ ଓ ୧୩୦ ଧାରା ମୁତାବକ ମକଦମା

୧ । କଛି ମାହାଲମାନଙ୍କରେ ନୂଆ ଜମା ଧାର୍ଯ୍ୟ ହେଲା ବାଦେ ଓ ପକ୍କ ମାହାଲ ମୌଜାମାନଙ୍କରେ ଠିକାଦାର ଓ ଠିକା ବାହେଲଦାରଙ୍କ ଅଧୀନସ୍ଥ ଜମି ସମ୍ପର୍କୀୟ ଧା ୧୧୬ ର ଆପତ୍ତିମାନ ଫଏସଲ ହେଲା ବାଦେ ରେକଡମାନ ଶେଷ ପ୍ରଚାର ( ଫାଇନାଲ ପବ୍ଲିକେସନ ) କରାଯିବ । ପୂର୍ବରୁ ନୋଟିସ ଦିଆଯାଇ ସ୍ଥାନ ଓ ସମୟ ନିର୍ଦ୍ଦିଷ୍ଟ କରାଗଲେ ସେହି ସ୍ଥାନରେ ସେହି ସମୟରେ ଖେଓଟ ଖତିଆନ ବଣ୍ଟନ କରାଯିବ ।

୨ । ପକ୍କ ମାହାଲ ମୌଜାମାନଙ୍କରେ ଏବଂ ବାହେଲଦାର ଓ ଠିକା ବାହେଲଦାର ଅଧୀନସ୍ଥ ପ୍ରଜାମାନଙ୍କର ଜମା କୌଣସି ପକ୍ଷର ବିନା ପ୍ରାର୍ଥନାରେ ସାନ୍ଦ ଧାର୍ଯ୍ୟ ହେବନାହିଁ ; ଅର୍ଥାତ୍ ଭୂମାଲିକ ଯଦି ତାଙ୍କ ଅଧୀନସ୍ଥ ପ୍ରଜାମାନଙ୍କ ଜମା ବୃଦ୍ଧି କରାଇବାକୁ ଚାହାନ୍ତି କିମ୍ବା ପ୍ରଜାମାନେ ଯଦି ଜମା କମ କରାଇବାକୁ ଚାହାନ୍ତି କିମ୍ବା ଜମା ଧାର୍ଯ୍ୟ ଯୋଗ୍ୟ ଲେଖା ହୋଇଥିବା ଜମିର ଜମା କରାଇବାକୁ ଚାହାନ୍ତି ତାହାହେଲେ ସେମାନଙ୍କୁ ପ୍ରଜାସତ୍ତ୍ୱ ଆଇନର ଧା ୧୨୮ ର ଅନୁସାରେ ଦରଖାସ୍ତ କରିବାକୁ ହେବ ।

(କ) ଏହି ଦରଖାସ୍ତ ଉପରୋକ୍ତ ଫାଇନେଲ ପବ୍ଲିକେସନ ତାରିଖ ଠାରୁ ତିନିମାସ ମଧ୍ୟରେ ଦାଏର କରିବାକୁ ହେବ ।

(ଖ) ଏହି ଦରଖାସ୍ତ ଜମିଦାରମାନେ ସ୍ୱୟଂ କିମ୍ବା ରେଜେଷ୍ଟ୍ରିର କ୍ଷମତା ପ୍ରାପ୍ତ ଏଜେଣ୍ଟ ଦ୍ୱାରା ସଦର ସେଟଲମେଣ୍ଟ ଅଫିସରେ ଦାଖଲ

କରବେ । ଡାକଟ୍ରେରଡ ଦରଖାସ୍ତ ଗ୍ରହଣ କରାଯିବ ନାହିଁ । ସ୍ୱୟଂ ଦରଖାସ୍ତ ଦାଖଲ କଲେ କୌଣସି ଓକିଲ କମ୍ବା ରେଭିନ୍ୟୁ ଏଜେଣ୍ଟ ଛଡ଼ାଯାଇ ପଡ଼ିବେ ।

(ଗ) ପ୍ରତ୍ୟେକ ଦରଖାସ୍ତରେ ପ୍ରତ୍ୟେକ ରଯ୍ୟତ ପକ୍ଷରେ ବାରଅଣା ମୂଲ୍ୟର କୋର୍ଟଫି ଦେବାକୁ ହେବ; ଅର୍ଥାତ୍ ମାଲକ ଯେତେ ଗୋଟି ଭିନ୍ନ ଖାତା ଉପରେ ଆପତ୍ତି କରିବେ ସେ ସେତେ ଗୋଟି ବାରଅଣା ମୂଲ୍ୟର କୋର୍ଟଫିସ ଦେବେ; କମ୍ବା ଯେତେଗୋଟି ଖାତାର ରଯ୍ୟତ ମିଳି ଦରଖାସ୍ତ କରିବେ ସେମାନେ ସେତେଗୋଟି ବାରଅଣା ମୂଲ୍ୟର କୋର୍ଟଫିସ ଦେବେ ।

( ଘ ) ମାଲକ ଯେତେଜଣ ରଯ୍ୟତଙ୍କୁ ଇଚ୍ଛା ସେତେ ଜଣଙ୍କୁ ପକ୍ଷ କରି ଏକଗୋଟା ଦରଖାସ୍ତ କରିପାରନ୍ତି । କିନ୍ତୁ ଉପରୋକ୍ତ ନିୟମ ମତେ ଭିନ୍ନ ଖାତା ପ୍ରତି ପୂର୍ଣ୍ଣ କୋର୍ଟଫିସ ଦେବାକୁ ହେବ ।

(ଙ) ଖତିଆନ ଲିଖିତ ସମସ୍ତ ରଯ୍ୟତଙ୍କୁ ପକ୍ଷ କରିବାକୁ ହେବ ।

(ଚ) ଫି ଦରଖାସ୍ତ ସହିତ ନିମ୍ନଲିଖିତ ସିଡୁଲ ପୂରଣ କରି ଦାଖଲ କରିବାକୁ ହେବ ।

(୧) କ୍ରମିକ ନମ୍ବର—

(୨) ଖାତା ନମ୍ବର—

(୩) ରଯ୍ୟତର ନାମ, ପିତାରନାମ, ଜାତି ଓ ବାସସ୍ଥାନ—

(୪) ହାଲ ବନ୍ଦୋବସ୍ତ ରକବା—

(୫) ଜମାବନ୍ଦି ରକବା—

(୬) ଫାଜିଲ ରକବା ( ଯଦି ଥାଏ )—

(୭) ବସତିର କୁଡ଼ ଖଜଣା—

(୮) ମୌଜାର ହାଲେଜ ରେଟରେ ଘାଜଲ ରକବା ଖଜଣା—

(୯) ୭ ଓ ୮ ଘରର ମୋଟ—

(୧୦) ଯୋତର ବର୍ତ୍ତମାନ ଜମା କେଉଁ ସମୟରୁ ଚାଲି ଆସୁଅଛି—

(୧୧) ୯ ଘର ଲିଖିତ ଜମାଉପରେ ପ୍ରଜାସତ୍ୱ ଆଇନର ଦଫା—* ଅନୁସାରେ ଟଙ୍କା ପ୍ରତି ଚାରିଅଣା ହିସାବରେ ମୋଟ ବୃଦ୍ଧି ଜମା—

(୧୨) ୯ ଓ ୧୧ ଘରର ମୋଟ ଜମା—

* ( ପ୍ରଜାସତ୍ୱ ଆଇନର ଯେଉଁ ଦଫା ଅନୁସାରେ ଜମିଦାରମାନେ ବୃଦ୍ଧି ପ୍ରାର୍ଥନା କରିବେ ସେହି ଦଫା ଏହିଠାରେ ପୂରଣ କରିଦେବେ ।)

(ଛ) ଖେଓ୍ୱାଟ ଭୁକ୍ତ ସମସ୍ତ ଅଂଶୀଦାର ମାଲିକମାନଙ୍କୁ ଏକତ୍ର ବାଦୀ ହୋଇ ଦରଖାସ୍ତ କରିବାକୁ ହେବ । ଷୋଳଅଣା ଅଂଶୀଦାରମାନେ ବାଦୀ ନ ଥିଲେ ଦରଖାସ୍ତ ଖାରଜ ହୋଇଯିବ ।

(ଜ) ଫି ଦରଖାସ୍ତ ସହିତ ପ୍ରତ୍ୟେକ ପ୍ରତିବାଦୀ ନିମନ୍ତେ ନୋଟିସ ଏବଂ ଅର୍ଜି ନକଲ ଦାଖଲ କରିବାକୁ ହେବ । ମଧ୍ୟ ନୋଟିସ ଖରଚ୍ଚ ଦାଖଲ କରିବାକୁହେବ । ପୂରା ନୋଟିସ ଖରଚ୍ଚ ପୂର୍ବରୁ ଦାଖଲ ନହୋଇଥିଲେ ସମନ ବାହାରକରାଯିବ ନାହିଁ । ନୋଟିସ ଖରଚ୍ଚ କମ ଦାଖଲ ହୋଇଥିଲେ ସେ ବିଷୟ ବାଦୀଙ୍କୁ ଜଣାଇବା ନଜଣାଇବା ଅଫିସରଙ୍କର ଇଚ୍ଛାଧୀନ ।

( ନୋଟିସ ଖରଚ୍ଚ ସମ୍ବନ୍ଧେ ଦେଖ ପରିଶିଷ୍ଟ 'ଙ'। )

( ଝ ) ବାଦୀ ଯେଉଁ ସମସ୍ତ ଦଲିଲ ପ୍ରମାଣ ସ୍ୱରୂପ ଦର୍ଶାଇବେ ତାହା ତାଲିକା ଭୁକ୍ତ କରି ପ୍ରତ୍ୟେକ ଅର୍ଜି ସହ ଦାଖଲ କରିବାକୁ ହେବ । ଯଦି କୌଣସି ଦଲିଲ ଦାଖଲ ନ କରାହୁଏ ତାହାହେଲେ ଫିରସ୍ତରେ ସେହି କଥା ଲେଖିଦେଇ ଓକିଲ ବା ମୁକ୍ତାର ଦସ୍ତଖତ କରିଦେବେ । କୌଣସି କାଗଜ ଦାଖଲ ହେଲା ବା ନହେଲା ସେ ବିଷୟରେ ଯେପରି ସନ୍ଦେହ ନରହେ ।

( ଙ ) କୌଣସି ଜମାଧାର୍ଯ୍ୟଯୋଗ୍ୟ ଖଣ୍ଡସ୍ଥାନର କିମ୍ବା କୌଣସି ଖଣ୍ଡସ୍ଥାନରେ ଥିବା ଜମାଧାର୍ଯ୍ୟଯୋଗ୍ୟ ପ୍ଲଟର ଜମାଧାର୍ଯ୍ୟ କରାଇବା ନିମନ୍ତେ ଆପତ୍ତି କଲେ ସେହି ଖଣ୍ଡସ୍ଥାନର ସହୀମୋହରର ଯାବଦା ନକଲ ଅର୍ଜୀ ସହିତ ଦାଖଲ କରିବାକୁ ହେବ ।

୩ । ଏହି ୧୨୮ଧାରା ଦରଖାସ୍ତ, ଉପରେ ନିମ୍ନଲିଖିତ ବିଷୟର ଆପତ୍ତି ମାନ ମଧ୍ୟ ବିଚାର କରାଯିବ—

( ୧ ) ଆପତ୍ତି ବାବତ ଜମି ଜମାଧାର୍ଯ୍ୟ ଯୋଗ୍ୟ କି ନା ;

( ୨ ) କୌଣସି ଜମି ରେକର୍ଡରେ ନିଷ୍କର ସ୍ୱରୂପ ଦରଜ ଥିଲେହେଁ ତାହା ପ୍ରକୃତରେ ନିଷ୍କର କିମ୍ବା ଜମାଧାର୍ଯ୍ୟଯୋଗ୍ୟ ;

( ୩ ) ରେକର୍ଡ଼ ଭୁକ୍ତ ମାଲିକ ଓ ରଯୃତ ମଧ୍ୟରେ ରାଜା ପ୍ରଜା ସମ୍ବନ୍ଧ ଅଛି କି ନା ;

( ୪ ) ବିବାଦୀୟ ଜମି ଯେଉଁ ମହାଲ ବା ମଧ୍ୟ ସତ୍ତ୍ୱାଧିକାରୀ ବା ରଯୃତ ଯୋତ ଅନ୍ତର୍ଗତ ବୋଲି ଦରଜ ହୋଇଅଛି ତାହା ନହୋଇ ଅପର କୌଣସି ମାହାଲ କିମ୍ବା ମଧ୍ୟସତ୍ତ୍ୱାଧିକାରୀ କିମ୍ବା ରଯୃତ ଯୋତ ଅନ୍ତର୍ଗତ ଜମି କି ନା ;

( ୫ ) ରଯୃତର ସତ୍ତ୍ୱ ସମ୍ବନ୍ଧେ ଆପତ୍ତି ;

( ୬ ) ବିଶେଷ ଅନୁସଙ୍ଗ ସମ୍ବନ୍ଧେ ଆପତ୍ତି ।

୪ । ୧୨୮ଧାରା ଦରଖାସ୍ତର ଆଦର୍ଶ ଖସଡ଼ା କାଂଟା ପରିଶିଷ୍ଟରେ ଦିଆଗଲା ।

୫ । ଶେଷ ପ୍ରକାଶିତ ପର୍ଚ୍ଚି ମାହାଲ କିମ୍ବା ଲଖରାଜଦାର କିମ୍ବା ଠିକା ବାହେଲଦାର ଅଧୀନସ୍ଥ ଜମିର ରେକର୍ଡରେ କୌଣସି ଭୁଲ ଥିଲେ ବା ତହିଁରେ ଦରଜ ଥିବା କୌଣସି ବିଷୟରେ କାହାର ଆପତ୍ତି ଥିଲେ ଉପରୋକ୍ତ ଫାଇନେଲ ପବ୍ଲିକେଶନ ତାରିଖଠାରୁ ୩ମାସ ମଧ୍ୟରେ ସେହି ଭୁଲ

ସଂଶୋଧନ ନିମନ୍ତେ କମ୍ବା ଅପତ୍ତିର ପ୍ରତିକାର ନିମନ୍ତେ ୧୩୦ଧାରା ଅନୁସାରେ ମୋକଦ୍ଦମା ଦାଏର କରିବାକୁ ହେବ ।

୬ । ଏହି ଦରଖାସ୍ତ ଓ ମୋକଦ୍ଦମାମାନ ଦେଓ୍ୱାନି କାର୍ଯ୍ୟବିଧି ଆଇନ ଅନୁସାରେ ଫଏସଲ କରିହେବ ଏବଂ ଦରଖାସ୍ତ ବା ମୋକଦ୍ଦମା ଦାଏର କରିବାର ମିଆଦ ଗତ ହୋଇଥିଲେ ସୁଦ୍ଧା ପ୍ରଜାସତ୍ୱ ଆଇନର ୧୩୧ (୨) ଧାରାନୁସାରେ ମୋକଦ୍ଦମାର ପକ୍ଷ ସଂଶୋଧନ କରିପାରିଯାଏ ।

୭ । ୧୨୮ଧାରା ଅନୁସାରେ ଦରଖାସ୍ତ ଦାଏର କରିବା ସମ୍ବନ୍ଧେ ଉପରେ ଯେଉଁ ସମସ୍ତ ନିୟମ ଲୁହାଯାଇଅଛି ତହିଁ ମଧ୍ୟରୁ ୨ (ଗ) ଲିଖିତ କୋର୍ଟଫିସ ଓ ୨ (ଚ) ଲିଖିତ ସିଡ୍ୟୁଲ ସମ୍ବନ୍ଧୀୟ ନିୟମ ବ୍ୟତୀତ ଅନ୍ୟାନ୍ୟ ସମସ୍ତ ନିୟମମାନ ୧୩୦ଧାରା ମୋକଦ୍ଦମା ଦାଏର ସମ୍ବନ୍ଧେ ପ୍ରଯୋଜ୍ୟ । ୧୩୦ଧାରା ମୋକଦ୍ଦମାରେ ଦାବି ସମ୍ପତ୍ତିର ତାଦାଦ ଟଙ୍କା ଉପରେ କୋର୍ଟଫିସ ଦେବାକୁ ହେବ । କେବଳ ସତ୍ୱ ସମ୍ବନ୍ଧେ ବିଚାର ପ୍ରାର୍ଥନା କରି ମୋକଦ୍ଦମା ଦାଏର କଲେ ସମ୍ପତ୍ତିର ତାଦାଦ୍ ଟଙ୍କା ଉପରେ କୋର୍ଟଫିସ ନିଆ ନଯାଇ କେବଳ ବାରଅଣା ମୂଲ୍ୟର କୋର୍ଟଫିସ ନିଆଯିବ । ସମ୍ପତ୍ତିର ଅନୁମାନିକ ମୂଲ୍ୟ ଟଙ୍କାରେ କଷୋଟ କରାଯାଇ ନ ପାରିଲେ ଟ୧୦୯ ଙ୍କା ମୂଲ୍ୟର କୋର୍ଟଫିସ ଦେବାକୁ ହେବ । ମୋହରିରମାନଙ୍କର ଲେଖିବା ଦୋଷରୁ ରେକର୍ଡରେ କୌଣସି ଭୁଲ ଥିଲେ ଏବଂ ତାହା ସଂଶୋଧନାର୍ଥ ଉଭୟ ପକ୍ଷ ରାଜି ହେଲେ ସମ୍ପତ୍ତିର ତାଦାଦ ଟ୫୯ଙ୍କା ବୋଲି ଧରାଯିବ । ଶେଷ ପ୍ରସ୍ତୁତ ରେକର୍ଡର ଜମା ଭୁଲ ଥିବାର ଆପତ୍ତି କଲେ ତାହା ୧୨୮ଦଫା ଅନୁସାରେ ଧରା ନଯାଇ ୧୩୦ଦଫା ମୁତାବକ ମୋକଦ୍ଦମା ବୋଲି ଧରାଯିବ । ପ୍ରତ୍ୟେକ ମୋକଦ୍ଦମାର ଅର୍ଜୀର ସହିତ ଖେଓ୍ୱାଟ ଓ ଖତିୟାନର ନକଲ ଦାଖଲ କରିବାକୁ ହେବ । (ସମନ ଖରଚା ସମ୍ବନ୍ଧେ ଦେଖ ପରିଶିଷ୍ଟ 'କ') ।

୮ । ୧୨୮ କିମ୍ବା ୧୩୦ ଦଫା ମୋକଦ୍ଦମାମାନ ଫଏସଲ ହେଲା ବାଦ ୧୫ ଦିନ ମଧ୍ୟରେ ସେହି କ୍ୟାମ୍ପରେ ସେହି ମୋକଦ୍ଦମାର ଫଏସଲା, ରାଏ ନକଲ, ସାକ୍ଷୀ ଜମାନବନ୍ଦୀ, ଅଡ଼ରସିଟ୍, ରଫାନାମା ଓ ରେଣ୍ଟ ସିଡ଼ୁଲର ନକଲ ମିଳିବ । ତଲ୍ଲାସଫିସ ବା ଅଭିରକ୍ତ (ଜରୁରଫିସ) ନିଆଯିବ ନାହିଁ । ଫଲିଓ (ଦାନିଅଣିଆ କପି କାଗଜ)ରେ ରେଣ୍ଟସିଡ଼ୁଲ ବ୍ୟତୀତ ଅପର ସମସ୍ତ ନକଲ ଦିଆଯିବ । ରେଣ୍ଟସିଡ଼ୁଲର ନକଲ ରେଣ୍ଟସିଡ଼ୁଲ ଫର୍ମରେ ଦିଆଯିବ । ପ୍ରତ୍ୟେକ ୫ଜଣ ବା ତହିଁରୁ କମ ରଇୟତ ସକାଶେ ଏକଗୋଟା ଲେଖାଏ ଫଲିଓ ଲାଗିବ । ୫ଜଣରୁ ଊର୍ଦ୍ଧ୍ୱ ରଏତ ହେଲେ ଯେତେ ଜଣ ଊର୍ଦ୍ଧ୍ୱ ଥିବେ ସି ୫ଜଣ ବା ୫ଜଣରୁ କମ ଥିଲେ ସେହି କମ ସଂଖ୍ୟକ ରଯୃତ ସକାଶେ ଏକଗୋଟା ଲେଖାଏ ଫଲିଓ ଲାଗିବ । ନକଲ ସକାଶେ ଦରଖାସ୍ତ ଉପରେ ଦୁଇଅଣା ମୂଲ୍ୟର କୋର୍ଟଫିସ ଲାଗିବ । ଏହା ପରେ କପି କାଗଜ ଯେତେ ଲାଗିବ ତାହା ଦେବାକୁ ହେବ । ତାହା ଉପରେ, ଯାବଦା ସକାଶେ ବାରଅଣା ମୂଲ୍ୟର କୋର୍ଟଫିସ ଦେବାକୁ ହେବ ।



# ଷଷ୍ଠ ଭାଗ

## ୪୭ ଧାରା ଅନୁସାରେ ଦରଖାସ୍ତ ଓ ତାହାର ବିଚାର

୧ । ପୂର୍ବରେ କୁହାଯାଇ ଅଛି ଯେ ପ୍ରଜା ସତ୍ୱ ଆଇନର ୪୭ ଧାରା ଅନୁସାରେ ଭାଗ ଜମାକୁ ନଗଦ ଜମାରେ ପରଣତ କରି ପାରିଯାଏ । ଏହି ଧାରା ଅନୁସାରେ ସମସ୍ତ ପ୍ରକାରର ରୟତ ଦରଖାସ୍ତ କରି ପାରନ୍ତି ନାହିଁ । କେବଳ ଯେଉଁ ରୟତମାନଙ୍କର ହାଲ ବନ୍ଦୋବସ୍ତ କାଗଜରେ ଦଖଲ-ସତ୍ୱବିଶିଷ୍ଟ କିମ୍ବା ସ୍ଥିତିବାନ ସତ୍ୱ ପାସ କରାଯିବ ସେହିମାନେ ଏହି ଧାରା ଅନୁସାରେ ଦରଖାସ୍ତ କରି ପାରିବେ । ଦଖଲସତ୍ୱଶୂନ୍ୟ କିମ୍ବା ସିକିମ ରୟତ ପ୍ରଭୃତି ଏହି ଧାରାନୁସାରେ ଦରଖାସ୍ତ କରି ପାରିବେ ନାହିଁ । ଜମିଦାର ମଧ୍ୟ ଦରଖାସ୍ତ କରି ପାରିବେ ।

୨ । ଏହି ଦରଖାସ୍ତ ଦାଏର କରିବାର କୌଣସି ମିଆଦ ନାହିଁ, ଏହା ଯେ କୌଣସି ସମୟରେ ଜିଲ୍ଲା କଲେକ୍ଟର ବା ସବ୍‌ଡିଭିଜନାଲ ଅଫିସରଙ୍କ ନିକଟରେ ଦାଏର କରି ପାରିଯାଏ । ବନ୍ଦୋବସ୍ତ ଚାଲୁଥିବା ସମୟରେ ଆସିଷ୍ଟାଣ୍ଟ ସେଟଲମେଣ୍ଟ ଅଫିସରଙ୍କ ନିକଟରେ କିମ୍ବା ଜମାବନ୍ଦି ଅଫିସରଙ୍କ ନିକଟରେ କିମ୍ବା ସଦର ସେଟଲମେଣ୍ଟ ଅଫିସରେ ମଧ୍ୟ ଏହି ଦରଖାସ୍ତ ଦାଏର କରି ପାରିଯାଏ । ତେବେ କୌଣସି ମୌଜାର ରେକର୍ଡ଼ ଶେଷ ପ୍ରଚାର ହୋଇ ଯାଇଥିଲେ ସେହି ମୌଜାର ୪୭ ଧାରା ଦରଖାସ୍ତ ସେଟଲମେଣ୍ଟ ଅଫିସରେ ଗ୍ରହଣ କରାଯିବ ନାହିଁ ।

୩ । ଏହି ଦରଖାସ୍ତର ପ୍ରତ୍ୟେକଟିରେ ବାରଅଣା ମୂଲ୍ୟର କୋର୍ଟଫିସ ଲାଗେ ।

୪ । ଖଣ୍ଡଯୋତ ସକାଶେ ୪୭ ଧାରା ଦରଖାସ୍ତ କଲେ ତାହା ନାମଞ୍ଜୁର କରାଯାଏ ।

୫ । ଯି ଦରଖାସ୍ତ ସହିତ ପ୍ରତିବାଦୀ ଉପରେ ଜାରି ନିମନ୍ତେ ନୋଟିସ ଓ ଅର୍ଯୀ ନକଲ ଦେବାକୁ ହେବ । ଦରଖାସ୍ତକାରୀଙ୍କୁ ବିଚାର ତାରିଖ ଓ ସ୍ଥାନ ଜଣାଇବା ନିମନ୍ତେ କୌଣସି ଫିସ ଲାଗିବ ନାହିଁ । ପ୍ରତିବାଦୀଙ୍କ ଉପରେ ନୋଟିସ ଜାରି କରିବା ନିମନ୍ତେ ନିମ୍ନଲିଖିତ ମତେ ନୋଟିସ ଖରଚ କୋର୍ଟଫିସରେ ଦେବାକୁ ହେବ ।

(କ) ସମସ୍ତ ପ୍ରତିବାଦୀ ଏକ ମୌଜାର ବାସିନ୍ଦା ହେଲେ ଏକଗୋଟି ବାରଅଣା ମୂଲ୍ୟର କୋର୍ଟଫିସ ଦେବାକୁ ହେବ ।

(ଖ) ପ୍ରତିବାଦୀମାନେ ଭିନ୍ନ ଭିନ୍ନ ମୌଜାର ବାସିନ୍ଦା ହେଲେ ଯେତେ ଗୋଟି ଗ୍ରାମକୁ ପିଅନ ଯିବ ସେ ଗ୍ରାମ ସକାଶେ ଟ ୦ ୷ ମୂଲ୍ୟର କୋର୍ଟଫିସ ଦେବାକୁ ହେବ ।

(ଗ) ଉପରୋକ୍ତ ପ୍ରକାର କୋର୍ଟଫିସ ବ୍ୟତୀତ ଯଦି ନୋଟିସ ଜାରି ସକାଶେ ରେଲ କିମ୍ବା ନୌକା ଆଦିରେ ଯିବାକୁ ହୁଏ, ସେଥିରେ ଯାହା ଖରଚ ପଡ଼ିବ ତାହା ମଧ୍ୟ ଦେବାକୁ ହେବ ।

(ଘ) ଦରଖାସ୍ତକାରୀର ପ୍ରାର୍ଥନା ମତେ ଯଦି ପ୍ରତିବାଦୀ ଉପରେ ନୋଟିସ ଜାରି କରିବାକୁ ଯାଇ ପିଅନକୁ ନୋଟିସ ଜାରି କରିବା ସ୍ଥାନରେ ୨୪ ଘଣ୍ଟାରୁ ଅଧିକ ସମୟ ଅପେକ୍ଷା କରିବାକୁ ହୁଏ ତାହାହେଲେ ପିଅନକୁ ତତ୍‌କ୍ଷଣାତ୍ ସେହି ସ୍ଥଳରେ ଦୈନିକ ଟ ୦ ।୵ ହିସାବେ ଦଣ୍ଡ ଦେବାକୁ ହେବ । ଏହା ଦରଖାସ୍ତକାରୀ ଦେବ ।

୬ । ନୋଟିସ ଜାରି ପରେ ଧାର୍ଯ୍ୟ ଦିବସରେ ନିର୍ଦ୍ଦିଷ୍ଟ ସ୍ଥାନ ଓ ସମୟରେ ଦରଖାସ୍ତ ବିଚାର ସକାଶେ ଗ୍ରହଣ କରାଯିବ । ଦରଖାସ୍ତକାରୀ

ନୋଟିସ ପାଇ ସୁଦ୍ଧା ଗରହାଜର ଥିଲେ ଦରଖାସ୍ତ ଖାରଜ କରାଯିବ । ପ୍ରତିବାଦୀ ଜମିଦାର ନୋଟିସ ପାଇ ସ୍ୱୟଂ କିମ୍ବା କ୍ଷମତା ପ୍ରାପ୍ତ କର୍ମଚାରୀ ଦ୍ୱାରା ଉପସ୍ଥିତ ନ ହେଲେ ତାଙ୍କ ଅନୁପସ୍ଥିତିରେ ଦରଖାସ୍ତ ବିଚାର କରାଯିବ ।

୭ । ଭାଗ କିମ୍ବା ସଞ୍ଜା ପ୍ରବୃତ୍ତି ପରିବର୍ତ୍ତେ ନଗଦ ଖଜଣା ଧାର୍ଯ୍ୟ କରି ଅସିଷ୍ଟାଣ୍ଟ ସେଟଲ୍‌ମେଣ୍ଟ ଅଫିସର ରାଏ ଦେଲେ ଏହି ରାଏ ବିରୁଦ୍ଧେ, ରାଏ ପ୍ରକାଶର ପନ୍ଦର ଦିନ ମଧ୍ୟରେ ସେଟଲମେଣ୍ଟ ଅଫିସରଙ୍କ ନିକଟରେ ଅପିଲ କରି ପାରାଯିବ । ଅପିଲ ଦରଖାସ୍ତ ସହିତ ରାଏ ନକଲ ଦାଖଲ କରିବାକୁ ହେବ ।

୮ । କଛିମାହାଲ ମୌଜାମାନଙ୍କରେ ଯେଉଁଠାରେ ପ୍ରଜାମାନଙ୍କର ଜମା ବୃଦ୍ଧି ହେଉଥିବ ସେଠାରେ କୌଣସି ପ୍ରଜା ୪୭ ଧାରା ଅନୁସାରେ ଦରଖାସ୍ତ କରିଥିଲେ ଓ ମାଲିକ ଏବଂ ପ୍ରଜା ଉଭୟେ ରାଜି ହୋଇ ଯେ ନଗଦ ଜମା ଧାର୍ଯ୍ୟ କରିବା ନିମନ୍ତେ କହିବେ ତାହା ନ୍ୟାଯ୍ୟ କି ନା ତାହା ବିଚାର କରି ଜମାବନ୍ଦୀ-ଅସିଷ୍ଟାଣ୍ଟ-ସେଟଲମେଣ୍ଟ-ଅଫିସର ଜମାବନ୍ଦୀ କରୁଥିବା ସମୟେ ବିଚାର କରି ଧାର୍ଯ୍ୟ କରିବେ । ଯଦି କୌଣସି ପକ୍ଷର ଆପତ୍ତି ହୁଏ ତାହାହେଲେ ଜମାବନ୍ଦୀ ସମୟରେ ବିଚାର ନ ହୋଇ ଏହି ଦରଖାସ୍ତମାନ ଉପରୋକ୍ତ ନିୟମ ମତେ ପରେ ବିଚାର କରାଯିବ ।



# ସପ୍ତମ ଭାଗ

## ବନ୍ଦୋବସ୍ତର ଖର୍ଚ୍ଚା ଆଦାୟ

୧ । ବନ୍ଦୋବସ୍ତ କାର୍ଯ୍ୟ ସବୁ ଫାଇନାଲ ପବ୍ଲିକେସନ ହୋଇ ସାରିଲା ବାଦ୍ ପଚ୍ଛିମାହାଲର ଜମିଦାର ଓ ପ୍ରଜାମାନଙ୍କଠାରୁ ଏବଂ କଛିମାହାଲର ବାହେଲଦାର ଓ ଠିକ୍କା ବାହେଲଦାର ଓ ସେମାନଙ୍କ ଅଧୀନସ୍ଥ ପ୍ରଜାମାନଙ୍କ ଠାରୁ ବନ୍ଦୋବସ୍ତ କାର୍ଯ୍ୟର ଖରଚ ଅଦାପ୍ତ କରାଯିବ। କାରଣ ଓଡ଼ିଶା ପ୍ରଜାସତ୍ୱ ଆଇନର ଦ ୧୪୬(୧) ଧାରା ଅନୁସାରେ ଯେଉଁଠାରେ ରାଜସ୍ୱ ବନ୍ଦୋବସ୍ତ ନ ହେଉଥିବ ସେଠାରେ ବନ୍ଦୋବସ୍ତ ହେଲେ ତାହାର ଖରଚ୍ଚ ମାଲିକ ଓ ପ୍ରଜାମାନେ ବହନ କରିବେ । ପଚ୍ଛି ମାହାଲମାନଙ୍କରେ ଅର୍ଥାତ୍ ଯେଉଁଠାରେ ଏହିଥର ନୂଆ ସର୍ଭେ ଓ ରେକର୍ଡ ପ୍ରସ୍ତୁତ କରାଯାଉ-ଅଛି ସେଠାରେ ଗଭର୍ଣ୍ଣମେଣ୍ଟ ମୋଟ ଖରଚର ଏକ ଚତୁର୍ଥାଂଶ ଦେବେ, ଓ ତିନି ଚତୁର୍ଥାଂଶ ମାଲିକ ଓ ପ୍ରଜାମାନଙ୍କୁ ଦେବାକୁ ହେବ । ମାଲିକ ଏବଂ ପ୍ରଜାମାନଙ୍କ ମଧ୍ୟରୁ କାହାକୁ କେତେ ଅଂଶ ଦେବାକୁ ହେବ ତାହା ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ଅନୁମୋଦିତ ହେବ । ବର୍ତ୍ତମାନ ବନ୍ଦୋବସ୍ତରେ ପ୍ରଜାମାନଙ୍କ ଅପେକ୍ଷା ଜମିଦାରମାନଙ୍କ ଉପକାର ଅଧିକ ଥିବାରୁ ପ୍ରଜା-ମାନଙ୍କ ଅପେକ୍ଷା ଜମିଦାରମାନଙ୍କୁ ଖରଚର ବେଶି ଅଂଶ ବହନ କରିବାକୁ ହେବ ।

୨ । ଦଖଲି ରକବା ଉପରେ ଖରଚ କଷୋଟ କରାହେବ । କାହାରି ଏକ ଏକରରୁ କମ ରକବା ଥିଲେ ତାହାକୁ ଏକ ଏକରର ଖରଚ

ଦେବାକୁ ହେବ । ଏକ ଏକରରୁ ଅଧିକ ହେଲେ ଅତିରିକ୍ତ ରକବା ଅର୍ଦ୍ଧେ ଏକର ମଧ୍ୟରେ ହେଲେ ଛାଡ଼ ଦିଆଯିବ । ଅର୍ଦ୍ଧ ଏକର ବା ତହିଁରୁ ଅଧିକ ହେଲେ ତାହା ଏକ ଏକର ବୋଲି ଧରାଯିବ ।

୩ । ଜମିଦାରମାନଙ୍କର ନିଜ ଯୋତ (ପ୍ରଜା ଦଖଲ ବା ନିଜର ଦଖଲ) ନିଜ ଗୃହ ଓ ନିଜ ଅଧୀନସ୍ଥ ଅନାବାଦ ଜମି ସର୍ଭେ ଏବଂ ହେକାନ୍ତ ସକାଶେ ସମସ୍ତ ଖରଚ ସେମାନଙ୍କୁ ଦେବାକୁ ହେବ ।

୪ । ଜମିଦାରମାନଙ୍କ ଅଧୀନେ ମଧ୍ୟସତ୍ତ୍ୱାଧିକାରୀ ଥିଲେ ମାଲିକି ଖରଚ୍ଚ ନିମ୍ନଲିଖିତ ମତେ ବଣ୍ଟା ହୋଇ ଜମିଦାର ଓ ମଧ୍ୟସତ୍ତ୍ୱାଧିକାରୀଙ୍କ ଠାରୁ ଅଦାୟ କରାଯିବ—

(୧) ଇସ୍ତମରାରୀ ମଧ୍ୟସତ୍ତ୍ୱାଧିକାରୀ —

[କ] ମୁକରରର ଜମାରେ ହେଲେ ସେମାନଙ୍କୁ ସମସ୍ତ ମାଲିକି ଖରଚ୍ଚ ଦେବାକୁ ହେବ ।

[ଖ] ମୁକରରର ଜମାରେ ନ ହେଲେ ମାଲିକି ଖରଚ୍ଚର ଏକ ଚତୁର୍ଥାଂଶ ଜମିଦାର ଓ ତିନ ଚତୁର୍ଥାଂଶ ମଧ୍ୟସତ୍ତ୍ୱାଧିକାରୀ ଦେବେ ।

(୨) ମିଆଦୀ ମଧ୍ୟସତ୍ତ୍ୱାଧିକାରୀ —

[କ] ୨୦ ବର୍ଷ କିମ୍ବା ତହିଁରୁ ଅଧିକ ମିଆଦ ବାକି ଥିଲେ ଜମିଦାର ଏକ ଚତୁର୍ଥାଂଶ ଓ ମଧ୍ୟସତ୍ତ୍ୱାଧିକାରୀ ତିନ ଚତୁର୍ଥାଂଶ ମାଲିକି ଖରଚ୍ଚରୁ ଦେବେ ।

[ଖ] ୨୦ ବର୍ଷରୁ କମ ଏବଂ ୭ ବର୍ଷରୁ ଅଧିକ ମିଆଦ ବାକି ଥିଲେ ମାଲିକି ଖରଚ୍ଚରୁ ଅର୍ଦ୍ଧେକ ଜମିଦାର, ଅର୍ଦ୍ଧେକ ମଧ୍ୟସତ୍ତ୍ୱାଧିକାରୀ ଦେବେ ।

(ଗ) ୭ ବର୍ଷରୁ କମ ବା ୨ ବର୍ଷରୁ ଅଧିକ ମିଆଦ ବାକି ଥିଲେ ମାଲିକି ଖରଚ୍ଚରୁ ଜମିଦାର ତିନି ଚତୁର୍ଥାଂଶ ଓ ମଧ୍ୟ-ସତ୍ତ୍ୱାଧିକାରୀ ଏକ ଚତୁର୍ଥାଂଶ ଦେବେ ।

(୩) ବେମିଅଦ ମଧ୍ୟସତ୍ୱାଧିକାରୀମାନେ ଅର୍ଦ୍ଧେକ ଓ ଜମିଦାର ଅର୍ଦ୍ଧେକ ମାଲିକ ଖରଚ୍ଚ ଦେବେ ।

(୪) ନିଷ୍କର ପ୍ରଜାମାନେ ଆପଣା ଦଖଲରେ ଥିବା ମାଲିକ ଖରଚ୍ଚରୁ ଜମିଦାରର ଅଂଶ ସମସ୍ତ ଦେବେ ଓ ନିଜ ଦଖଲରେ ଥିବା ରକବାର ରୟତି ଅଂଶ ମଧ୍ୟ ଦେବେ ।

୫ । ଖରଚ୍ଚ ଆଦାୟ ସମୟରେ ମାଲିକ ଏବଂ ରୟତଙ୍କୁ ପର୍ଚ୍ଚା ବାଣ୍ଟି ଦିଆଯିବ ; ଏବଂ ନକସା ମଧ୍ୟ ଦିଆଯିବ । ଟଙ୍କା ଆଦାୟ କରି ସମସ୍ତଙ୍କୁ ରସିଦ ଦିଆଯିବ ।

୬ । ପୂର୍ବରୁ ନୋଟିସ ଦିଆଯାଇ ଖରଚ୍ଚ ଆଦାୟ କରିବାର ସ୍ଥାନ ଓ ସମୟ ନିର୍ଦ୍ଦିଷ୍ଟ କରାଯିବ । ଏହି ନୋଟିସ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ମୌଜାରେ ଜାରି କରାଯିବ । ନିର୍ଦ୍ଦିଷ୍ଟ ସ୍ଥାନରେ ସମୟରେ ହାଜର ହୋଇ ଖରଚ୍ଚ ଆଦାୟ ନ ଦେଲେ ତଲବାନା ଫିସ୍ ଟ ୧୵ ସହିତ ହାଜର ହେବାକୁ ନୋଟିସ କରାଯିବ । କିମ୍ବା ସାର୍ଟିଫିକେଟ ଜାରୀ କରାଯିବ । ଏଣୁକରି ନିର୍ଦ୍ଦିଷ୍ଟ ସମୟରେ ହାଜର ନ ହେଲେ ଖରଚ୍ଚ ଆଦାୟରେ କୌଣସି ବାଧା ପଡ଼ିବ ନାହିଁ । କେବଳ ଜମିଦାର ଓ ପ୍ରଜାମାନଙ୍କୁ ଅଯଥା ଖର୍ଚ୍ଚାନ୍ତ ହେବାକୁ ହେବ । ବଡ ଜମିଦାରମାନଙ୍କ ଖରଚ୍ଚ ପୃଥକ ପୃଥକ ରୂପେ ଆଦାୟ ନ ହୋଇ ତାହାଙ୍କଠାରୁ ମୋଟ କେତେ ଟଙ୍କା ପାଉଣା ତାହାର ତାଲିକା କରି ସେମାନଙ୍କୁ ଦିଆଯିବ, ଓ ତାହା ଦାଖଲ କରିବାର ସମୟ ନିର୍ଦ୍ଦିଷ୍ଟ କରି ଦିଆଯିବ । ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ସେହି ଟଙ୍କା ଦାଖଲ ନ କଲେ ସେମାନଙ୍କ ନାମରେ ସାର୍ଟିଫିକେଟ ଦାଏର କରାଯିବ ।

୭ । ଯଦି ଖରଚ୍ଚ ଆଦାୟ ପୂର୍ବରୁ କୌଣସି ଜମିଦାର କିମ୍ବା ପ୍ରଜା ମରିଯାଏ କିମ୍ବା ସେମାନଙ୍କ ଜମିଦାରୀ ବା ଯୋତ ହସ୍ତାନ୍ତରିତ ହୋଇଥାଏ ତାହାହେଲେ ଦଖଲକାର ବ୍ୟକ୍ତିମାନଙ୍କଠାରୁ ଖରଚ୍ଚ ଆଦାୟ କରାଯିବ ।

୮ । ଯେଉଁ ସମସ୍ତ ବାଜେଲଦାର ଓ ଠିକା ବାଜେଲଦାରମାନଙ୍କ ଅଧୀନରେ ଅତ୍ୟନ୍ତ କମ ରକବା ଥିବ ସେମାନଙ୍କ ଠାରୁ ଅଦାୟ ଖରଚ୍ ଉପରୋକ୍ତ ନିୟମ ଅନୁସାରେ ରକବା ଉପରେ କଷୋଠ କଲେ କଷ୍ଟକର ହୋଇପାରେ; ଏଣୁକରି ଏମାନଙ୍କଠାରୁ ସେଟଲମେଣ୍ଟ ବିଭାଗ ଇଚ୍ଛାକଲେ ରକବା କଷୋଠରେ ଖରଚ୍ ଅଦାୟ ନ କରି ଖତିଆନ ପ୍ରତି ଆଠଅଣା ହିସାବେ ଖରଚ୍ ଅଦାୟ କରି ପାରନ୍ତି । ଏମାନଙ୍କୁ ଖତିଆନ ଦିଆଗଲା ବେଳେ ଖତିଆନ ପ୍ରତି ଆଠଅଣା ମୂଲ୍ୟ ନିଆ ଯାଇପାରେ । ସେଟଲମେଣ୍ଟ ବିଭାଗ ଏଥିରୁ କମ ମୂଲ୍ୟ ମଧ୍ୟ ଧାର୍ଯ୍ୟ କରି ପାରନ୍ତି ।

୯ । ଫାଏନେଲ ପବ୍ଲିକେସନ ସଙ୍ଗେସଙ୍ଗେ କମ୍ପା ପରେ ଖର୍ଚ୍ଚା ଆଦାୟକରି ପାରିଯାଏ ଏବଂ ଖର୍ଚ୍ଚା ଅଦାୟ କରିବା ସମୟରେ ନକଲ ଖେୱଟ, ପଟ୍ଟା ଓ ନକସା ବଣ୍ଟାଯିବ । ଯେଉଁମାନଙ୍କଠାରୁ ଖର୍ଚ୍ଚା ଅଦାୟ କରାଯିବ ସେମାନେ ଯେ ଟଙ୍କା ଦାଖଲ କରିବେ ତାହାର ଯଥାଯଥ ରସିଦ ଦିଆଯିବ । ଅଦାୟ ଟଙ୍କା ରସିଦରେ ଠିକରୂପେ ଦରଜ ନ ହୋଇଥିଲେ ସେ ବିଷୟ ତତ୍‌କ୍ଷଣାତ୍ ସେହି କ୍ୟାମ୍ପର ଅଫିସରଙ୍କ ନଜରକୁ ଆଣିବା ଉଚିତ ।

୧୦ । ଖର୍ଚ୍ଚା-ଅଦାୟ-କ୍ୟାମ୍ପରେ ଯାହାକୁ ଯେତେ ଦେବାକୁ ହେବ ତାହା ଦାଖଲ ନକଲେ ତାହା ସକାଶେ ସାର୍ଟିଫିକଟ ଜାରି କରାଯିବ । ନୋଟିସ ଖର୍ଚ୍ଚା ଓ ସର୍ଟିଫିକଟ ଖର୍ଚ୍ଚା ପ୍ରଭୃତି ମିଶାଇଲେ ଦାବୀ ଟଙ୍କା, ସାଧାରଣତଃ ଦୁଇଗୁଣ ହୋଇଯିବ, ଏଣୁ ଖର୍ଚ୍ଚା ଅଦାୟ କ୍ୟାମ୍ପରେ ଆପଣା-ଆପଣା ଦେୟଟଙ୍କା ସମସ୍ତଙ୍କର ଦାଖଲ କରିବା ଉଚିତ ।



# ଅଷ୍ଟମଭାଗ

## ଅପିଲ

| ଯେଉଁ ରାଏ ବା ହୁକୁମ ଉପରେ ଅପିଲ | ୧ମ ଅପିଲ କାହା ଠାକୁ କରିବାକୁ ହେବ; ତାହାର ମିଆଦ | ଦ୍ୱିତୀୟ ଅପିଲ କାହାଠାକୁ କରିବାକୁ ହେବ, ତାହାର ମିଆଦ | ତୃତୀୟ ଅପିଲ କାହାଠାକୁ କରିବାକୁ ହେବ; ତାହାର ମିଆଦ |
|---|---|---|---|
| ୧ । ପ୍ରଜାସତ୍ୱ ଆଇନର ୪୭ଧାରା ଅନୁସାରେ ଆ, ସେ-ଅଫିସରଙ୍କ ରାଏ | ସେଟଲମେଣ୍ଟ ଅଫିସର; ୧ମାସ | ବିଭାଗୀୟ କମିଶନର; ୧ ମାସ | ବୋର୍ଡ ଅଫ ରେଭିନ୍ୟୁ (କେବଳ ଆଇନ ବିଷୟରେ); ୧ମାସ । |
| ୨ । ୧୨୩ଧାରା ଅନୁସାରେ ଆ, ସେ, ଅଫିସରଙ୍କ ରାଏ | ସେଟଲମେଣ୍ଟ ଅଫିସର; ୨ମାସ, ୧୨୫ଦଫା ଅନୁସାରେ [୧୨୫ ଦଫାଅପିଲର ଫର୍ମ ସକାଶେ ଦେଖ ପରିଶିଷ୍ଟ (ଗ) ] | ବିଭାଗୀୟ କମିଶନର (ଯୋତର ଜମା ଟ୧୦୦ ଙ୍କା ବା ତାହାର ଉପର ଧାର୍ଯ୍ୟ ହୋଇଥିଲେ); ୧ ମାସ । | ବୋର୍ଡ ଅଫ ରେଭିନ୍ୟୁ; ୨।୧ସ |
| ୩ । ୧୨୮, ୧୨୯ ୧୩୦, ୧୩୨, ୧୩୩ ଧାରା ଓ ୧୩୭ଧାରା ଅନୁସାରେ ରାଏ | ସ୍ପେଷଲଜଜ ୧ମାସ | ହାଇକୋର୍ଟ (କେବଳ ଆଇନ ବିଷୟ) ୧ ମାସ । | ନାହିଁ |
| ୪ । ସର୍ଭେ ଆଇ[illegible] ଓମ୍ବା ଦେଓ୍ୟାନୀକାର୍ଯ୍ୟ ବିଧି ଆଇନାନୁସାରେ ଆ, ସେ, ଅଫିସରଙ୍କ ଦ୍ୱାରା ଜରିମାନା ହୁକୁମ | ସେଟଲମେଣ୍ଟ ଅଫିସର;୧ମାସ | ନାହିଁ | ନାହିଁ |

# ନବମଭାଗ

## ଶେଷ

୧ । ରେକର୍ଡ଼ମାନ ଶେଷ ପ୍ରଚ୍ଚର ହୋଇସାରିଲା ବାଦ ଏହି ରେକର୍ଡମାନ ପ୍ରମାଣ ସ୍ୱରୂପ ଅଦାଲତରେ ଦାଖଲ କରାଯାଇ ପାରିବ। ରେକର୍ଡ଼ମାନ ଶେଷ ପ୍ରଚ୍ଚର (ବା ଫାଇନାଲ ପବ୍ଲିକେଶନ) ହୋଇଅଛି କି ନାଃ ତାହା ପ୍ରମାଣ କରିବାକୁ ହେଲେ ଓଡିଶା ପ୍ରଜାସତ୍ୱ ଆଇନର ଦଂ୧୭ଫା ମୁତାବକ ଗେଜେଟରେ ପ୍ରକାଶ ହୋଇଥିବା ନୋଟିସ ଦ୍ୱାରା ତାହା ପ୍ରମାଣ କରିବାକୁ ହେବ ।

୨ । ବନ୍ଦୋବସ୍ତ ବିଭାଗର ଯେ ସମସ୍ତ ନିୟମାବଳୀ କରା ହୋଇଅଛି ବା ହୁଏ ତାହା ପରିବର୍ତ୍ତନ କରି ପାରାଯାଏ ।

୩ । ରେକର୍ଡ ଶେଷ ପ୍ରଚ୍ଚର ହୋଇଥିବା ସମ୍ବନ୍ଧେ ସର୍ଟିଫିକେଟ ତାରିଖ ଠାରୁ ଏକବର୍ଷ ମଧ୍ୟରେ ଏହି ରେକର୍ଡ଼ରେ ଥିବା ପ୍ରକୃତ ଭୁଲମାନ ସଂଶୋଧନ କରି ପାରାଯାଏ । ଏହିପ୍ରକାର ପ୍ରକୃତ (Bonafide) ଭୁଲ ସଂଶୋଧନ କରାଇବା ନିମନ୍ତେ ଯେ କୌଣସି ଲୋକ ପ୍ରଜାସତ୍ୱ ଆଇନର ଧା୧୩୩ରା ଅନୁସାରେ ଦରଖାସ୍ତ କରିପାରେ ।

୪ । ପ୍ରଜାସତ୍ୱ ଆଇନର ଦଂ୨୮ଫା ଲଗାଏତ ୧୩୦ଦଫା ଅନୁସାରେ ଅ, ସେ, ଅଫିସରମାନେ ଯେଉଁ ରାଏ ଦେଇଥିବେ ତହିଁରେ କୌଣସି ଭୁଲଥିଲେ ତାହା ସଂଶୋଧନ (ରିଭିଜନ) ନିମନ୍ତେ ସେହି ରାଏ ପ୍ରକାଶ ତାରିଖଠାରୁ ବାରମାସ ମଧ୍ୟରେ ସେଟଲମେଣ୍ଟ ଅଫିସରଙ୍କ ନିକଟ ଦରଖାସ୍ତ କରି ପାରାଯାଏ ।

୫ । ପ୍ରଜାସତ୍ୱ ଆଇନର ଧା୪୭, ୧୧୮ ଓ ୧୩୭ର ଅନୁସାରେ ନିର୍ଦ୍ଧାରିତ ଜମା, ନିର୍ଦ୍ଧାରଣ ତାରିଖଠାରୁ ପନ୍ଦରବର୍ଷ ମଧ୍ୟରେ ବୃଦ୍ଧି କରାଯାଇ ପାରିବ ନାହିଁ । କିନ୍ତୁ ରାଜସ୍ୱ ବନ୍ଦୋବସ୍ତ ସମୟରେ ଏହି ନିୟମର ବ୍ୟତିକ୍ରମ ହୋଇପାରେ ଓ ରେଭିନ୍ୟୁ ଅଫିସର କୌଣସି ମିଆଦରେ ବାଧ୍ୟ ନରହି ଯେ କୌଣସି ସମୟରେ ଜମାବୃଦ୍ଧି କରି ପାରନ୍ତି ।

୬ । ପ୍ରଜାସତ୍ୱ ଆଇନର ଦ୧୩୯ଫା ଅନୁସାରେ ସେଟଲମେଣ୍ଟ ଡ଼ିପାର୍ଟମେଣ୍ଟ ଯେଉଁ ଜମାଧାର୍ଯ୍ୟ କରିଦେବେ ତାହା ପରବର୍ତ୍ତୀ କୃଷିବର୍ଷ (Agricultural year) ଆରମ୍ଭରୁ ଆଦାୟ ହୋଇପାରିବ । କିନ୍ତୁ ଯେଉଁଠାରେ ରାଜସ୍ୱ ବନ୍ଦୋବସ୍ତ ହେଉଥିବ ସେଠାରେ, ରେଣ୍ଟରୋଲର ଫାଏନାଲ ପବ୍ଲିକେସନ ତାରିଖଠାରୁ କିମ୍ବା ରେଭିନ୍ୟୁ ଅଫିସର କର୍ତ୍ତୃକ ନିର୍ଦ୍ଧାରିତ ଅନ୍ୟ କୌଣସି ତାରିଖଠାରୁ ନୂଆ ଜମାମାନ ଆଦାୟ ହେବ ।



# ପରିଶିଷ୍ଟ—କ

ଧା ୧୨୮, ୧୩୦ଗ ଅନୁସାରେ ପ୍ରତିବାଦୀଙ୍କୁ ସମନ କରିବାକୁ ହେଲେ ନିମ୍ନଲିଖିତ ତାଲିକାମତେ ସମନ ଖର୍ଚ୍ଚ କୋର୍ଟଫିସ ଷ୍ଟାମ୍ପ ସହିତ ଦାଖଲ କରିବାକୁ ହେବ । [ଦେଖ ୫ମ ଭାଗ ପାରା ୨ (ଚ) ଓ ୭ ।]

| ଯେତେଜଣଙ୍କୁ ସମନ କରିବାକୁ ହେବ : | ସମ୍ପତ୍ତିର ତାଦାଦ ଟଙ୍କା — ଟ ୧୦୦୦ ଟଙ୍କାରୁ ବେଶୀ ହେଲେ | ସମ୍ପତ୍ତିର ତାଦାଦ ଟଙ୍କା — ଟ ୧୦୦୦ ଟଙ୍କାରୁ କମ ହେଲେ |
|---|---|---|
| ୧ | ୨ | ୩ |
| ୧ରୁ ୪ ... ... | ଟ ୩ ୧ | ଟ ୧୳ |
| ୫ ... ... | ଟ ୩ ୴ | ଟ ୧୴୶ |
| ୬ ... ... | ଟ ୪ ୳ | ଟ ୨ । |
| ୭ ... ... | ଟ ୫ । | ଟ ୨୳୶ |
| ୮ ... ... | ଟ ୬ ୧ | ଟ ୩ ୧ |
| ୯ ... — | ଟ ୬ ୴ | ଟ ୩ ।୶ |
| ୧୦ — — | ଟ ୭ ୳ | ଟ ୩୴ |

(କ) ଧା ୧୨୮ଗ ଅନୁସାରେ ସମନ ଖର୍ଚ୍ଚା ଦାଖଲ କରିବା ସମୟରେ ସମ୍ପତ୍ତିର ତାଦାଦ ଟ୧୦୦୦ ଟଙ୍କାରୁ କମ ବୋଲି ଧରାଯିବ; ଅର୍ଥାତ୍ ୩ କଲମ ଲିଖିତ ଫିସ ଆଦାୟ ହେବ ।

(ଖ) ମୋକଦ୍ଦମାର ପକ୍ଷ ଛଡ଼ା ଅପର କୌଣସି ବ୍ୟକ୍ତି ଉପରେ ସମନ ଜାରି କରିବାକୁ ହେଲେ ସେ ବ୍ୟକ୍ତି ସକାଶେ ଟ ।୶ ଲେଖାଏଁ ଖର୍ଚ୍ଚା ଦାଖଲ କରିବାକୁ ହେବ ।

## ପରିଶିଷ୍ଟ-ଖ

Schedule I--Form No.3B.
Orissa Tenancy Act Rules, 1914.
Chap. VII. Rule 68 (b).

OBJECTION UNDER SECTION $\frac{116}{123\ 1}$ OF THE ORISSA TENANCY ACT, 1913.

ଓଡ଼ିଶା ପ୍ରଜାସତ୍ୱବିଷୟକ ଆଇନର ଧାରା $\frac{୧୧୬}{୧୨୩(୧)}$ ଅନୁସାରେ

### ଆପତ୍ତି

[ବିଧାନାବଳୀର ୭ମ ଅଧ୍ୟାୟର ୬୮ (ଖ) ବିଧି ଦେଖ]

ମୌଜା— ଥାନା—

ଥାନା ନମ୍ବର— କମ୍ପା ରାଜସ୍ୱ ଜମାବ ନମ୍ବର—

ଜିଲ୍ଲା— ପ୍ରଗଣା—

ଆପତ୍ତିକାରୀର ନାମ, ପିତାର ନାମ, ଜାତି ଏବଂ ଠିକଣା।

ଯେଉଁ ବ୍ୟକ୍ତିର ଖତିଆନର ଲିଖିତ ବିଷୟରେ ଆପତ୍ତି ହୋଇ ଅଛି ସେହି ବ୍ୟକ୍ତିର ନାମ, ପିତାର ନାମ, ଜାତି ଏବଂ ଠିକଣା ଏବଂ ଜଣା ଥିଲେ ଖତିଆନର ନମ୍ବର।

ଯେଉଁ ବିଷୟରେ ଆପତ୍ତି କରା ହୋଇଅଛି ତହିଁର ବର୍ଣ୍ଣନା ଓ ଆପତ୍ତିର ବିଶେଷ ବିବରଣ।

ପ୍ରାର୍ଥିତ ପ୍ରତିକାରର ବର୍ଣ୍ଣନା—

ଆପତ୍ତି କାରକର ଦସ୍ତଖତ ଓ ଦାଖଲର ତାରିଖ—

## ପରିଶିଷ୍ଟ—ଗ

Schedule VI (N. S)-Form No. 23.)
(Orissa Settlement, 23.)

## ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ୪୭ଦଫା ମୁତାବକ ଦରଖାସ୍ତ

ରେଜେଷ୍ଟ୍ରୀ ନ—

ମୌଜାର ନାମ ——— ପ୍ରଃ — ଥାନା
ଥାନା ନ——— ତୌ — ଜିଲ୍ଲା

ଦରଖାସ୍ତକାରୀର ନାମ } ଖଉଅନ । ମୁ । / ଖେଓ୍ୱାଟ । ମୁ ।

ନମ୍ବର } ଖଉଅନ / ଖେଓ୍ୱାଟ

ବିପକ୍ଷର ନାମ } ଖେଓ୍ୱାଟ । ମୁ । / ଖଉଅନ । ମୁ ।

ନମ୍ବର } ଖେଓ୍ୱାଟ / ଖଉଅନ

ରକବା

ପ୍ଲଟ ନମ୍ବର———— ଏଃ ଡିଃ ମାଃ ଗୁଃ ବିଃ
ବାକୀ

ଅବ ଦରଖାସ୍ତ ଦ୍ୱାରା ପ୍ରାର୍ଥନା କରୁଅଛୁଁ କି ଉପର ଲିଖିତ ନମ୍ବର ଯାହାର ଉତ୍ପନ୍ନ ଜମା [ଧୂଳିଭାଗରେ] ଦରଜ କରା ଯାଇଅଛୁ ତାହା ପ୍ରତିମାଣକୁ କାଗଜାତ ଓ ପ୍ରମାଣ ଅନୁଯାଇ ଅଦାଲତ ଯାହା ଉଚିତ ବିଚାର କରନ୍ତି ତାହା ବଖାଯଉ ଓ ଅନ୍ୟାନ୍ୟ ଦାବୀ ଯାହା ପାଇବା ଅମ୍ଭର ଉଚିତ ତାହା ଦେବା ପ୍ରତି ବହୁତ ହୁକୁମ ସାଦର ହେଉ ।

ତା ମାସ ସନ ୧୯୬ ମସିହା

ଦରଖାସ୍ତକାରୀର ଦସ୍ତଖତ୍ ।

## ପରିଶିଷ୍ଟ-ଘ

Orissa Settlement,
Appeal under Section 125 O. T. A.

## ଓଡ଼ିଶା ପ୍ରଜାସତ୍ୱ ଆଇନର ୧୨୫ଧାରା ଅନୁଯାଇ ଅପିଲ

ଅପିଲାଣ୍ଟର ନାମ ଓ ବାସସ୍ଥାନ—

ରେସପାଣ୍ଡେଣ୍ଟର ନାମ ଓ ବାସସ୍ଥାନ—

ଯେଉଁ ଧା୧୨୩ଙ୍କ ବିରୁଦ୍ଧେ ଅପିଲ ତାହାର ନମ୍ବର ଓ ଫଏସଲ ତା ରିଖ

ମୌଜାର ନାମ ଥାନା ଥାନା ନମ୍ବର

ନିମ୍ନ ଅଦାଲତର ପ୍ରଥମ ବାଦୀର ନାମ--

ନିମ୍ନ ଅଦାଲତର ପ୍ରଥମ ପ୍ରତିବାଦୀର ନାମ—

ନିମ୍ନ ଅଦାଲତରେ କି ପ୍ରକାର ଆପତ୍ତି ହୋଇଥିଲା ତହିଁର ବିବରଣୀ---

ନିମ୍ନ ଅଦାଲତରେ ଆପତ୍ତି ମଞ୍ଜୁର ହୋଇଥିଲା କି ନାମଞ୍ଜୁର ହୋଇଥିଲା—

ଅପିଲର କାରଣ—

ଅପିଲାଣ୍ଟର ଦସ୍ତଖତ୍

ବିଶେଷ ଦ୍ରଷ୍ଟବ୍ୟ

୧ । ଏହି ଅପିଲରେ ବାରଅଣା କୋର୍ଟଫିସ ମଡାଇବାକୁ ହେବ ।

୨ । ଏହି ଫାରମର ଦୁଇକାତା ପୁରଣ କରି ଡ଼ାକଦ୍ୱାରା ପଠାଇ ପାର କିମ୍ବା ଶ୍ରୀଯୁକ୍ତ ସେଟଲମେଣ୍ଟ ଅଫିସର ସାହେବ ବାହାଦୂରଙ୍କ ସମିପରେ କଟକ ମୁକାମରେ ଦାଖଲ କରିପାର ।

୩ । ଏହି ଅପିଲ ଦରଖାସ୍ତ ସଙ୍ଗେ ଅପିଲାଣ୍ଟ ନାମେ ନୋଟିସ ଦୁଇକତା ଓ ରେସପାଣ୍ଡେଣ୍ଟ ନାମେ ନୋଟିସ ଦୁଇକିତା ପୁରଣ କରିଦେବ ।

୪ । ଅପିଲଫାରମ ଓ କୋର୍ଟଫିସ ବିଧିମତେ ଲେଖା ନଥିଲେ ଅପିଲ ସରସର ନାମଞ୍ଜୁର ହେବ ।

# ପରିଶିଷ୍ଟ—ଙ

ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ୧୬୮ ଦଫା ଅନୁସାରେ ଦରଖାସ୍ତ

ମୌଜାର ନାମ—

ଥାନା—

ଥାନା ନମ୍ବର—

ଜିଲ୍ଲା—

ଦରଖାସ୍ତକାରୀର ନାମ, ପିତାର ନାମ, ଜାତି ଏବଂ ବାସସ୍ଥାନ }... ଖେଓ୍ୱାଟ ନମ୍ବର / ଖାତା ନମ୍ବର

ପ୍ରତିବାଦୀର ନାମ, ପିତାର ନାମ ଜାତି ଏବଂ ବାସସ୍ଥାନ }... ଖେଓ୍ୱାଟ ନମ୍ବର / ଖାତା ନମ୍ବର

ଦାବି

ଶେଷ ପ୍ରସ୍ତୁତ ରେକର୍ଡ଼ରେ କୌଣସି ଜମି ଜମା ଧାର୍ଯ୍ୟ ଯୋଗ୍ୟ ବୋଲି ଦରଜ ଥିଲେ ତାହାର ଜମା ଧାର୍ଯ୍ୟ କରାଇବା ନିମନ୍ତେ ପ୍ରାର୍ଥନାର ବିବରଣ ଓ ଜମିର ପ୍ଲଟ ନମ୍ବର ଓ ରକବା ।

କିମ୍ବା

ମାଲିକ ଅପଣା ଅଧୀନସ୍ଥ ପ୍ରଜାମାନଙ୍କର ଶେଷ ପ୍ରସ୍ତୁତ ରେକର୍ଡରେ ଦରଜ ହୋଇଥିବା ଜମା ବୃଦ୍ଧି କରାଇବାକୁ ଚାହିଁଲେ ତାହାର କାରଣ ଓ ପ୍ରାର୍ଥନାର ବିବରଣ ।

କିମ୍ବା

ପ୍ରଜାମାନେ ଶେଷ ପ୍ରସ୍ତୁତ ରେକର୍ଡ଼ରେ ଦରଜ ହୋଇଥିବା ଆପଣାର ଜମା କମ କରାଇବାକୁ ଚାହିଁଲେ ତାହାର କାରଣ ଓ ପ୍ରାର୍ଥନାର ବିବରଣ ।

ଉପରୋକ୍ତ ବିଷୟମାନ ଆମ୍ଭେ ଦରଖାସ୍ତକାରୀଙ୍କର ଜ୍ଞାନମତେ ସତ୍ୟ ଅଟେ ।

ଦସ୍ତଖତ

## ବିଶେଷ ଦ୍ରଷ୍ଟବ୍ୟ

୧ । ପୃଷ୍ଠା ୨୩ ଧାରା ୧୫ (ଖ) ୯ ଧାଡରେ "ଦଣ୍ଡନୀୟ ହେବାକୁ ହେବ" ପରେ ଯୋଗ ହେବ "ଜମିଦାରମାନେ ସରକାରଙ୍କୁ ଯେଉଁ କବୁଲିୟତ ଦେଇ ଅଛନ୍ତି ତାହାର ସର୍ତ୍ତାନୁସାରେ ସେମାନେ ମଧ୍ୟ ରକ୍ଷିତ ଅନାବାଦୀ ଜମିକୁ ଆବାଦରୁ ରକ୍ଷା କରିବାକୁ ବାଧ୍ୟ; ଏବଂ ଏହି ସର୍ତ୍ତ ଭଙ୍ଗ ନିମନ୍ତେ ସେମାନଙ୍କୁ ଜିଲ୍ଲା କଲେକ୍ଟର ଗୁରୁତର ଜୋରିମାନା କରି ପାରନ୍ତି । ତେଣୁ ଜମିଦାର ଓ ପ୍ରଜା ଉଭୟଙ୍କର ରକ୍ଷିତ ଜମି ଆବାଦରୁ ରକ୍ଷା କରିବା ଉଚିତ ।"

୨ । ପୃଷ୍ଠା ୨୯ ପାରା ୨ (ଖ) ୧ ମ ଧାଡରେ "ବାଉଣ୍ଡ୍ରୀ ପିଲର ଅର୍ଥାତ୍ ହିସୀମାଲ ପଥର" ସ୍ଥଳେ "ବାଉଣ୍ଡ୍ରୀ ପିଲର ଓ ହିସୀମାଲ ପଥର" ହେବ ।

୩ । ପୃଷ୍ଠା ୨୧ ପାରା ୧୪ (କ) ପ୍ରଥମ ଧାଡରେ "**Law of murger**" ସ୍ଥଳେ "**Law of merger**" ହେବ ।



Printer-R. N. Rath, Satyabadi Press, Puri. 1925.

Public Instruction No. 40.

No. 1042

UPPER PRIMARY SCHOLARSHIP EXAMINATION, 1890.

Balasore DISTRICT.

CERTIFIED that Raghunath Bhatacharya son of Haradhan Bhatacharya inhabitant of Aharpada in Zillah Balasore and student of Aharpada School appeared at the Upper Primary Scholarship Examination held in January 1890, and was passed in the Second Division, the Divisions being thus fixed :—

1ST DIVISION.—One-half marks and upwards.

2ND DIVISION.—Three-eighths marks and less than one-half.

3RD DIVISION.—One-fourth marks and less than three-eighths

Radhanath Rai

Cuttack
Dated 30th July 1890 } Joint Inspector of Schools,
Orissa Circle.

A 320—13-9-88 —3355—6,900—1602

